

କୃପା ସାଗର ସାହୁ (୧୯୫୨)
ଏକାଧାରରେ ଜଣେ କବି ଓ କଥାକାର । ରେଭେନ୍ସା କଲେଜରୁ ସ୍ନାତକ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ଲାଭ ପରେ ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରେ ତିନି ବର୍ଷ ଧରି ଅଧ୍ୟାପନା କରନ୍ତି । ୧୯୭୮ରୁ ଭାରତୀୟ ରେଳବାଇ ଯାତାୟତ ସେବାରେ କର୍ମରତ । କବିତା, ଗଳ୍ପ, ଉପନ୍ୟାସ, ଶିଶୁ ସାହିତ୍ୟ, ଭ୍ରମଣ କାହାଣୀ—ସାହିତ୍ୟର ପ୍ରାୟ ସମସ୍ତ ବିଭାଗରେ ସେ ଉତ୍ସର୍ଗୀକୃତ । ଏ ପର୍ଯ୍ୟନ୍ତ ବାରଟି ପୁସ୍ତକର ରଚୟିତା । 'ଶେଷ ଶରତ' ତାଙ୍କର ପ୍ରଥମ ଉପନ୍ୟାସ ।

*Shesha Sarata* : A Novel in Oriya by Krupa Sagar Sahoo. Published by Kusumita Publications. Bhubaneswar. 2006. Price : Rs. 60/-.



ଶେଷ ଶରତ

ପ୍ରଥମ ପ୍ରକାଶ : ୨୦୦୬

ଲେଖକ : କୃପା ସାଗର ସାହୁ

ପ୍ରକାଶକ : କୁସୁମିତା ପବ୍ଲିକେଶନ୍ସ
ପ୍ଲଟ୍ ନଂ - ଏଚ.ପି. ୩,
ଷ୍ଟେଜ-୨, ଲକ୍ଷ୍ମୀସାଗର
ଭୁବନେଶ୍ୱର-୭୫୧୦୦୬

ଅକ୍ଷର ବିନ୍ୟାସ : କଳିଙ୍ଗ ଲେଜର ଗ୍ରାଫିକ୍ସ
୩, ବାଙ୍କାରାୟ ଷ୍ଟ୍ରୀଟ୍
କଲିକତା-୭୦୦ ୦୧୨

ପ୍ରଚ୍ଛଦ : ଦେବେନ ଲାହା

ମୁଦ୍ରଣ : ଲେଜର ଏଡ୍
୯୫ଏ, ଚିତ୍ତରଞ୍ଜନ ଏଭିନ୍ୟୁ
କଲିକତା-୭୦୦ ୦୭୩

ମୂଲ୍ୟ : ୬୦ ଟଙ୍କା

# ଚିଲିକା : ଏକ ପ୍ରେମ କାହାଣୀ

'ପ୍ରତିବେଶୀ' ପତ୍ରିକାର ପୂଜାସଂଖ୍ୟା, ୧୯୯୯ରେ ପ୍ରକାଶିତ ମୋର 'ଶେଷ ଶରତ' ଶୀର୍ଷକ ଦୀର୍ଘ ଗଳ୍ପଟି କିଛି ପାଠକଙ୍କର ମନେ ଥିବ । ସେ ଗଳ୍ପର ପୃଷ୍ଠଭୂମିଟି ଏହିପରି : ପୁରୀର ଜଣେ କବି ବନ୍ଧୁଙ୍କ ଘରେ ମଧ୍ୟାହ୍ନଭୋଜନରେ ମାଂସ ସେବନ କରି ପରିତୃପ୍ତ ହେଲା ପରେ ସେ ସୂଚନା ଦେଲେ–ଏହା ଚିଲିକାର ଏକ ପର୍ଯ୍ୟଟକ ପକ୍ଷୀର ମାଂସ । ଏକ ବଣ ଜଙ୍ଗଲ ଘେରା ଗାଁରେ ମୋର ବାଲ୍ୟଜୀବନ ଅତିବାହିତ ହୋଇଥିବାରୁ ଅନେକ ପଶୁ ପକ୍ଷୀଙ୍କର ମାଂସର ସ୍ୱାଦ ନେବାର ସୁଯୋଗ ମିଳିଥିଲା । କିନ୍ତୁ ଏହି ଚିଲିକାର ପକ୍ଷୀ-ମାଂସ ଖାଇବା ପରେ ମନଟା ବିଷଣ୍ଣ ହୋଇଯାଇଥିଲା । ତା' ପରେ ଏକ ପ୍ରାୟଶ୍ଚିତ୍ତ ସ୍ୱରୂପ ମୁଁ ଲେଖିଥିଲି ଏହି ଗଳ୍ପ ।

ଏହି ବଡ଼ ଗଳ୍ପଟି ପ୍ରକାଶ ପାଇଲା ପରେ ଅନେକ ଉତ୍ସାହ-ବର୍ଦ୍ଧକ ପତ୍ର ହସ୍ତଗତ ହୋଇଥିଲା । ସେଥିରୁ ଜଣେ ଲେଖକବନ୍ଧୁଙ୍କର ଦୀର୍ଘ ପତ୍ରର କିୟଦଂଶ ଏହିପରି :

''ଏଇନେ 'ଶେଷ ଶରତ'ର ଶେଷ ସ୍ପର୍ଶ ପାଇ ସ୍ପନ୍ଦିତ, ଆଲୋଡ଼ିତ, ଉଦ୍‌ବେଳିତ ଓ ଅଭିଭୂତ ଏବଂ ସ୍ତମ୍ଭୀଭୂତ । ସ୍ରଷ୍ଟା ତାଙ୍କର ଶେଷ ନିର୍ଯ୍ୟାସ ନିଗାଡ଼ିବାର ସାଧୁ ପ୍ରୟାସ କରିଛନ୍ତି । ଛଳନାର ଲେଶମାତ୍ର ଛିଟା ନାହିଁ କେଉଁଠି । ଶରତର ଆକାଶ ଭଳି ସୃଷ୍ଟିଟି ନିର୍ମଳ, ସାତ୍ତ୍ୱିକ ବିଭୂତିରେ ସ୍ନିଗ୍ଧ, ସୁଗ୍ରଥିତ ଏବଂ ସୁଲିଖିତ । ପ୍ରାଚ୍ୟ ଓ ପାଶ୍ଚାତ୍ୟକୁ ଏକାତ୍ମ୍ କରିବାର ମାନବିକ ସୂକ୍ଷ୍ମ ରେଶମୀ ବନ୍ଧନ, ବୌଦ୍ଧିକତା, ଭୂଗୋଳର ଭେଦକୁ ଭାଙ୍ଗୁଥିବାର ପ୍ରୟାସ, 'ମା' ନିଷାଦ'ର କରୁଣ ଉଦ୍‌ଗୀତ ସୂକ୍ତ, ଅନୁଭବର ସାନ୍ଦ୍ରତା, ସମସ୍ୟାର ଶୈଳ୍ପିକ ଉପସ୍ଥାପନା, ହା ହତୋଽସ୍ମିର ଅନ୍ତର୍ଜ୍ୱଳନ, ପରିମିତ ଅଥଚ ସାନ୍ଦ୍ର ଆବେଗ, ଶିଳ୍ପକଳା, ସ୍ୱାଦ, କଳ୍ପଲୋକ ଓ ଭୂଲୋକ ଭିତରେ

ଛାଇ ଆଲୁଅ ଖେଳ, ଠାଏ ଠାଏ ଚଟୁଳତା, ଏବଂ ଆଉ କେତେ କ'ଣ ଗଳ୍ପଟିର ଧନାତ୍ମକ ବିଭବ । ... ତେବେ କିଛି ପରାମର୍ଶ । କାହାଣୀଟିକୁ ୩୬ ପୃଷ୍ଠାରୁ ୮୦ ପୃଷ୍ଠା କରାଯାଉ । କାହାଣୀର ପୃଷ୍ଠଭୂମି ଓ ସମୟକୁ ନେଇ ଟିକେ ଦୀର୍ଘ ହେବ । ... ସାମାନ୍ୟ ବର୍ଦ୍ଧିତ ରୂପରେ 'ଶେଷ ଶରତ' ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ଉପନ୍ୟାସ ହୋଇ ରହିବ ।'' ଏହିଭଳି ଅନେକ ପାଠକ ପାଠିକାଙ୍କର ମତାମତ ପାଇଥିଲି ।

ହେଲେ ବନ୍ଧୁ ଆର୍ଯ୍ୟ ଯଜ୍ଞଦତ୍ତ ଏବଂ ଅନ୍ୟ ପାଠକପାଠିକାମାନେ ମୋତେ ଗୋଟିଏ ବିରାଟ ଦ୍ୱନ୍ଦ୍ୱରେ ପକାଇଦେଲେ । ଉପନ୍ୟାସର ଲେଖିବାର ମାନସିକତା ଏବଂ ଅଧ୍ୟବସାୟର ଅଭାବ ଥିବାରୁ ସେହି ସ୍ୱପ୍ନକୁ ସାର୍ଥକ କରିବାକୁ ଦୀର୍ଘ ସାତବର୍ଷ ବିତିଗଲା । ଗୋଟିଏ ଉପନ୍ୟାସକୁ କାଣ୍ଟଛାଟ କରି ଗଳ୍ପଟିଏ ପ୍ରସ୍ତୁତ କରିବା ବୋଧହୁଏ ଆୟାସସାଧ୍ୟ । କିନ୍ତୁ ଗୋଟିଏ ଗଳ୍ପକୁ ପ୍ରସାରିତ କରି ଉପନ୍ୟାସ କରିବା ବଡ଼ କାଠିକର ପାଠ ।

ରାଧାନାଥ ରାୟ ଓ ଗୋପବନ୍ଧୁ ଦାସଙ୍କ କାବ୍ୟ କବିତା ପଢ଼ି ଚିଲିକାକୁ ମାନସ ଚକ୍ଷୁରେ ଦେଖିଥିଲି । ସ୍ୱଚକ୍ଷୁରେ ଦେଖିଲି କଲେଜରେ ପ୍ରଥମେ ପାଦ ଦେଇଥିବା ଏକ ଅଜାତଶ୍ମଶ୍ରୁ କିଶୋରଟିଏ ଥିଲାବେଳେ । ସେହି ପ୍ରଥମ ଦର୍ଶନରେ ଚିଲିକାର ପ୍ରେମରେ ପଡ଼ିଯାଇଥିଲି, ଫୁଲଟିଏ ଦେଖି ପ୍ରେମରେ ପଡ଼ିଯାଉଥିବା ଏକ ବର୍ଣ୍ଣ ବିଭୋର ପ୍ରଜାପତି ପରି ।

ଦୀର୍ଘ ତିରିଶି ବର୍ଷ ପରେ 'ଶେଷ ଶରତ' ଗଳ୍ପ ଲେଖିବା ପୂର୍ବରୁ ଆଉଥରେ ଚିଲିକା ଦେଖିବାକୁ ଯାଇଥିଲି । ଅନେକ ବର୍ଷ ବ୍ୟବଧାନ ପରେ ପ୍ରେମିକାକୁ ଦେଖି ତା'ର ଚକ୍ଷୁ ପ୍ରାନ୍ତରେ ମୌସୁମୀର ଦୁଷ୍ଟାମି, ଅଧରରେ ସମୁଦ୍ରର ଶୋଷ ଏବଂ କବରୀରେ ରାତ୍ରିର ରହସ୍ୟ ପରିବର୍ତ୍ତେ ବୟସର ଅତ୍ୟାଚାରର ଜଳଜଳ ଚିହ୍ନ ଦେଖି ଜଣେ ମୁଗ୍ଧ ପ୍ରେମିକ ଯେମିତି ହତାଶ ହୁଏ, ଚିଲିକାର ଅବକ୍ଷୟ ଦେଖି ମୋର ସେହିଭଳି ପ୍ରତିକ୍ରିୟା ହୋଇଥିଲା ।

ଚିଲିକାକୁ ତା'ପରେ ମୁଁ ଅନେକ ଥର ଯାଇଛି । ଚିଲିକାକୁ ଦେଖିଛି ବାଲୁଗାଁ ଆଡୁ, ବରକୂଳ ଆଡୁ । ଦେଖିଛି ରମ୍ଭା ଆଡୁ, ସାତପଡ଼ା ଆଡୁ । ଯେତେଥର ଯାଇଛି ଏହାର ଅବକ୍ଷୟକୁ ସ୍ୱଚକ୍ଷୁରେ ଅବଲୋକନ କରିଛି । ଚିଲିକାର ପକ୍ଷୀକୂଳ ଉପରେ ଆକ୍ରମଣ ସମ୍ପର୍କରେ ଲୋକ ମୁଖରୁ ଶୁଣିଛି । ଚିଲିକାକୁ ନେଇ ବାଦବିସମ୍ବାଦ, ଏହାର ପରିବେଶର ବିପର୍ଯ୍ୟୟ ଖବରକାଗଜମାନଙ୍କରୁ ପଢ଼ିଛି । ଉପନ୍ୟାସ ଲେଖିବା ପାଇଁ ଯେତିକି ଗବେଷଣା କରିବା କଥା ତାହା ମୁଁ କରି ପାରି ନାହିଁ ।

ମୋ ଉପନ୍ୟାସର କାଳ୍ପନିକ ନାୟକ ଭଳି ମାସ ମାସ ଧରି ଚିଲିକାରେ କ୍ୟାମ୍ପ କରି ରହିଥିଲେ, ହୁଏତ ଏ ଉପନ୍ୟାସଟିର ଗତିପଥ ବଦଳି ଯାଇଥାନ୍ତା । ଚିଲିକାର ଅଜାଗା ଘା ବୋଧହୁଏ ଆହୁରି ସୁସ୍ପଷ୍ଟ ହୋଇ ଦେଖାଯାଇଥାନ୍ତା । ଚିଲିକାକୁ ନେଇ କୁମ୍ଭୀର କାନ୍ଦଣା କରୁଥିବା ବ୍ୟକ୍ତିଙ୍କର ମୁଖା ଆହୁରି ବେଶୀ ଖୋଲି ଯାଇଥାନ୍ତା । ଚିଲିକାର ସାମ୍ପ୍ରତିକ ଚିତ୍ର ଆହୁରି ଜ୍ୱଳନ୍ତ ଭାବେ ଚିତ୍ରିତ ହୋଇଥାନ୍ତା ।

କିନ୍ତୁ ତାହା ହୋଇଥିଲେ ଚିଲିକାକୁ ନେଇ ଦେଖୁଥିବା ଏହି ଲେଖକର ସ୍ୱପ୍ନର ବୋଧହୁଏ ମୃତ୍ୟୁ ହୋଇଥାନ୍ତା । ତେଣୁ ଏମିତି ଅଧା ଛାଇ, ଅଧା ଆଲୁଅକୁ ଫେଣ୍ଟି ମୁଁ ଉପନ୍ୟାସଟିକୁ ପାଠକଙ୍କ ସାମ୍ନାରେ ପେଶ କରିବାକୁ ଉଚିତ ଭାବିଲି ।

ଚିଲିକାକୁ ସାଇବେରୀୟ ସାରସ ଆସୁଥିଲେ ବୋଲି କୌଣସି ପ୍ରମାଣ ନାହିଁ । ଏହାକୁ ମୁଁ କଳ୍ପନା କରିଛି । କାରଣ, ଚିଲିକାର ପ୍ରେମରେ ପଡ଼ି ଏକ ପଦ୍ମଭୁକ୍ ଭଳି ମୁଁ ଏ ଲେଖା ଲେଖିଛି ।

ଉପନ୍ୟାସର ପରିସମାପ୍ତି ଯାହା ହୋଇଥାଉ ନା କାହିଁକି ଚିଲିକାକୁ ନେଇ ମୁଁ ଏବେ ବି ସ୍ୱପ୍ନ ଦେଖୁଛି । ଏହାକୁ ନେଇ ଏକ ବିଶ୍ୱସ୍ତରୀୟ ପର୍ଯ୍ୟଟନ କେନ୍ଦ୍ର କରିହେବ । ଏହାର ପରିବେଶ ପ୍ରତି ସରକାରୀ ସଂସ୍ଥାଗୁଡ଼ିକ ଯେତିକି ଖାମଖିଆଲ, ବେସରକାରୀ ସଂସ୍ଥା ଓ ଜନସାଧାରଣ ସେତିକି ଉଦାସୀନ । ଚିଲିକାକୁ କେନ୍ଦ୍ର କରି ଏକ ଚିଲିକା-ମାତୃକା ସଭ୍ୟତା ବୋଧହୁଏ ଓଡ଼ିଶାରେ କେବେ ଥିଲା । ଚିଲିକା ଭଳି ଓଡ଼ିଶାର ଅନ୍ୟ ପର୍ଯ୍ୟଟନ କେନ୍ଦ୍ରଗୁଡ଼ିକର ବିକାଶ ହେଲେ ଏବଂ ସେଥିପାଇଁ ସରକାରଙ୍କ ତରଫରୁ ଭିତ୍ତିଭୂମି ଏବଂ ତା'ର ରକ୍ଷଣାବେକ୍ଷଣରେ ଜନସାଧାରଣଙ୍କର ଅକୁଣ୍ଠ ସହଯୋଗ ରହିଲେ ଏ ରାଜ୍ୟର ଅର୍ଥନୀତି ପର୍ଯ୍ୟଟନକୁ ଭିତ୍ତିକରି ଚାଲିବ ବୋଲି ଏ ଲେଖକର ଦୃଢ଼ ଧାରଣା । ଏହିଭଳି ସ୍ୱପ୍ନ ଏ ଉପନ୍ୟାସର ଆତ୍ମା ।

ସର୍ବଶେଷରେ ଏହି ଉପନ୍ୟାସଟି ପଢ଼ି ଯଦି କିଛି ପାଠକଙ୍କର ମନରେ ପକ୍ଷୀ-ଜଗତ ପ୍ରତି ସାମାନ୍ୟତମ ଦରଦ ଉଦ୍ରେକ ହୁଏ, ତା' ହେଲେ ମୋର ସୃଷ୍ଟି ସାର୍ଥକ ହେଲା ବୋଲି ମୁଁ ମନେକରିବି ।

- କୃପା ସାଗର ସାହୁ

## (୧)

ସାଇବେରିଆର ସୀମାହୀନ ସମତଳ ଭୂମିରୁ ଯେତେବେଳେ ବାର୍ଚ୍ଚ, ଉଇଲୋ ଓ ପପଲାର ପ୍ରଭୃତି ବୃକ୍ଷଗୁଡ଼ିକ ପତ୍ରଝଡ଼ା ଦେଲେ, ଉତ୍ତର ମେରୁଆଡୁ ବୈକାଲ ଆଡ଼କୁ ବହିଆସିଲା ହାଡ଼ଥରା ହେମାଳ ପବନ, ଲେନା ନଦୀର ଛାତିରେ ନିଥରତା ଭରିଦେଲା ସୁମେରୀୟ ସ୍ରୋତ ଏବଂ ଶୀତ ଲହରୀରେ ଅତିଷ୍ଠ ହୋଇ ତୁନ୍ଦ୍ରାଞ୍ଚଳରୁ ଟାଇଗାକୁ ମାଡ଼ିଆସିଲେ ଦଳ ଦଳ ବଲ୍‌ଗାହରିଣ, ସେତିକିବେଳେ ସାରସ କହିଲା– ''ସାରସୀଲୋ, ସଜ ହୁଅ ଯିବା ।''

ସାରସ ଅନୁଭବୀ । ସାରସ ପ୍ରତ୍ୟୁତ୍ପନ୍ନମତି । ସେ ଜାଣେ ଯେ ଆଉ କିଛିଦିନ ଅନ୍ତେ 'ସୁପ୍ତ ଇଲାକା' ନାମରେ ବିଦିତ ସାଇବେରିଆକୁ ଅକାଳ ଗ୍ରାସିବ । ସବୁ ଜଳ ହେବେ ତୁଷାର । ସବୁ ମାଟି ହେବେ ପଥର । ତୁହା ତୁହା ତୁଷାର ମାଡ଼ରେ ଚିରହରିତ ବୃକ୍ଷମାନେ ହାହାକାର କରିଉଠିବେ କୋରଡ଼ାମାଡ଼ରେ ତ୍ରସ୍ତ 'ଗୁଲାଗ୍' କ୍ୟାମ୍ପର ବେଠି-ଶ୍ରମିକଙ୍କ ପରି । ପ୍ରସ୍ତ ପ୍ରସ୍ତ ତୁଷାରକଣିକା ତଳେ ପୋତି ହୋଇ ଯିବେ କୁନିକୁନି ଜୀବ, କୀଟ ଓ ପତଙ୍ଗ । ଚଂଚଳଚଞ୍ଚଳା ଲେନା ନଦୀ ଏକ ମହମର ମଡ଼େଲ ପରି ଆଖିବୁଜି ଶୋଇଯିବ ଗହମ ନିଦରେ । ଦିନର ଆୟୁଷ ହେବ କ୍ଷୀଣ । ରାତ୍ରି ହେବ ପ୍ରବଳା । ବାତାବରଣରେ ଛାଇଯିବ ଅସାଡ଼ ଜଡ଼ତା ।

ସୀମାନ୍ତୀନ ସାଇବେରିଆ ।

ସେଠି ଶୀତଋତୁ ପ୍ରଳୟଙ୍କରୀ ।

ସେଥିପାଇଁ ସାରସର ଆଖିରେ ନିଦ ନଥିଲା । ତା'ର ମନ ଭିତରେ ଉଙ୍କି ମାରୁଥିଲା ଅସୁମାରି ଆଶଙ୍କା ଓ ଉଦ୍‌ବିଗ୍ନତା ।

ସ୍ୱାମୀ ଉପରେ ସଦାସର୍ବଦା ନିର୍ଭରଶୀଳା ସାରସୀ ନିର୍ମାୟା ଚିତ୍ତରେ ଉତ୍ତର ଦେଲା–''କୁଆଡ଼େ ଯିବା ଗୋ ?''

ଏଭଳି ଖାମଖିଆଲୀ ପ୍ରଶ୍ନରେ ସାରସର ମନରେ କ୍ରୋଧ ଉଦ୍ରେକ ହୁଏନା । ସାରସୀ ସହ ଘରସଂସାର ବାନ୍ଧିବାର ଗୋଟିଏ ଯୁଗ ବିତିଗଲାଣି । ସେ ତା'ର ସ୍ତ୍ରୀ-ସୁଲଭ ମସ୍ତିଷ୍କର ଅପରିପକ୍ୱତା, ଆସନ୍ନ ବିପଦ ପ୍ରତି ବେପରବାୟତା ସମ୍ପର୍କରେ ଭଲଭାବେ ଜାଣେ । ତା' ଉପରେ ଘରକରଣାର ସବୁ ନିଷ୍ପତ୍ତି ଛାଡ଼ି ଦେଇଥିଲେ କେବେଠୁ ସବୁ କିଛି ଉଚ୍ଛନ୍ନ ହୋଇ ସାରନ୍ତାଣି । ତେଣୁ ସେ ନିର୍ବିକାର ହୋଇ କହିଲା– ''ଚାଲ, ଅକାଳ ପଡ଼ିବା ପୂର୍ବରୁ ଦେଶାନ୍ତରୀ ହେବା ।''

ଦୀର୍ଘସୂତ୍ରିତା ପାଇଁ ନାମ ଅର୍ଜନ କରିଥିବା ସାରସୀ କହିଲା–''ଏତେ ଜଲ୍‌ଦି ? ମୁନା ମୋର ଏବେ ବି ଖଣ୍ଡିଉଡ଼ା ଦେଉଛି ।''

ସ୍ତ୍ରୀମାନଙ୍କୁ ସନ୍ତାନମାନେ ଚିରଦିନ ଅବୋଧ ବାଳୁତପ୍ରାୟ ବୋଧ ହୁଅନ୍ତି । ତେଣୁ ସେ ସାରସୀ ଉପରେ ନ ଚିଡ଼ି କହିଲା–''ମୁଁ ଆଜି ବୈକାଳର ହାଲ୍ ଜାଣିବା ପାଇଁ ଯାଇଥିଲି । ସେଠାରୁ ହଂସ, ହଂସରାଳି, ପାଣିକୁଆ ସବୁ ଦଳ ଦଳ ହୋଇ ଦେଶାନ୍ତରୀ ହେଲେଣି । ଆଉ ଦିନେ ଦି'ଦିନ ଭିତରେ ଚାତକ, ଚକୁଆ ପ୍ରଭୃତି ପକ୍ଷୀମାନେ ଯିବେ ବୋଲି କଥାବାର୍ତ୍ତା ହେଉଥିଲେ । ଆମେ ବି ତିନି ଚାରିଦିନ ପରେ ଚାଲିଯିବା । ମୁନ୍ନାକୁ ପ୍ରସ୍ତୁତ କରାଅ । ଲେନା ନଦୀର ଏ କୂଳରୁ ସେ କୂଳକୁ ତାକୁ ଦିନକୁ ଦଶଥର ପାରି କରାଅ । ତା' କାନ୍ଧରେ ମୃଦଙ୍ଗ ପଡ଼ିଲେ ସେ ବଳେ ଶିଖିଯିବନି ।''

ସାରସ 'ତିନିଚାରିଦିନ ପରେ ଯିବା' କହିବା ମାନେ ପ୍ରକୃତପକ୍ଷେ ହାତରେ ସାତଦିନ ରଖି କହୁଥିଲା ।

–''ହଉ , ହେଲା ଯେ ସଜ ହେବି କ'ଣ ? ଆମେ କ'ଣ ମନୁଷ୍ୟ ହୋଇଛେ ଯେ ଯାତ୍ରା ପୂର୍ବରୁ ଗଣ୍ଠୁଲି ଭିଡ଼ିବା । ଆମେ ତ ଶୂନ୍ୟ ହସ୍ତରେ ଯିବା । ଶୂନ୍ୟ ହସ୍ତରେ ଫେରିବା ।

ଟିକିଏ ଆଶଙ୍କାପୂର୍ଣ୍ଣ ଚିତ୍ତରେ ପୁଣି କଥା ଯୋଡ଼ିଲା–"ଫେରିବା କି ନାହିଁ କେଜାଣି ।"

ସାରସ ଏଥିରେ ଟିକିଏ ବିରକ୍ତି ପ୍ରକାଶ କରି କହିଲା–"ତମେ ନା, ସବୁବେଳେ ସେମିତି ।"

ତା' ପରେ ନିଜର ପ୍ରିୟତମା ପତ୍ନୀକୁ ପ୍ରବୋଧନା ଦେଇ କହିଲା–"ସେଭଳିଆ ଅମଙ୍ଗଳିଆ କଥା ତୁଣ୍ଡରେ ଧରନି । ଯାତ୍ରା କରିବା ଆମର ଧର୍ମ । ଉଡ଼ିବା ହିଁ ଆମର କର୍ମ । ଆଉସବୁ ଈଶ୍ୱରଙ୍କ ହାତରେ । ଯାହା ଆମ ଭାଗ୍ୟରେ ଥିବ ।"

ସାରସୀ ଏଥର ମୁହଁରେ ଟିକିଏ ହସ ଖେଳାଇ କହିଲା–"ନା ମ, ମୁଁ ସେମିତି କହୁଥିଲି ନା... । କିନ୍ତୁ ଏଥର ଯିବା କେଉଁଠିକୁ କହିଲ ? ଆଉ ସେ ନାଳ ନର୍ଦ୍ଦମା ପାଣିରେ ଘାଣ୍ଟି ହେବାପାଇଁ ମୁଁ ଭରତପୁର ନ ଯାଏ । ସେ ଜାଗାଟା ନରକଠୁ ହୀନ ହେଲାଣି ।"

ପ୍ରତ୍ୟେକ ବର୍ଷ ଏହି ସମୟରେ ସେମାନେ ଭରତପୁର ପକ୍ଷୀ ଅଭୟାରଣ୍ୟକୁ ଆସନ୍ତି । ସେହି ଜାଗାକୁ ଏବେ ସାରସୀ ପୂତିଗନ୍ଧମୟ ନର୍କ ସହ ତୁଳନା କରୁଥିଲା ।

ଏକଦା ଭରତପୁର ପକ୍ଷୀମାନଙ୍କର ଶୀତନିବାସ ପାଇଁ ଏକ ପ୍ରିୟ ସ୍ଥାନ ଥିଲା । ଏସିଆ, ୟୁରୋପ, ଆଫ୍ରିକାର ବିଭିନ୍ନ ଇଲାକାରୁ ପକ୍ଷୀମାନେ ଏଠିକୁ ଉଡ଼ିଆସୁଥିଲେ । ବ୍ରିଟିଶ ରାଜତ୍ୱ ସମୟରେ ରାଜା, ମହାରାଜା, ବଡ଼ଲାଟ, ଛୋଟଲାଟମାନଙ୍କର ଏ ସ୍ଥାନ ଥିଲା ବିହରଣ ସ୍ଥଳ । ସାତଦିନ ଧରି ଲାଗୁଥିଲା କ୍ୟାମ୍ପ । ରାଜଧାନୀରୁ ଆସୁଥିଲେ ସଚିବ ଓ ସହାୟକଗଣ । ଦେଶୀୟ ରାଜ୍ୟରୁ ଛୁଟୁଥିଲା ଅମାତ୍ୟ ଓ ପାରିଷଦଙ୍କ ପଲଟଣ । ସେମାନେ ଆସୁଥିଲେ ପ୍ରାକ୍ ପ୍ରସ୍ତୁତି ପାଇଁ ହାତୀ, ଘୋଡ଼ା, ଓଟରେ ଜିନିଷ ବୋହି ବୋହି । ଆଉ କେତେକ ଆସୁଥିଲେ ସାହେବ ଓ ମେମଙ୍କର ମନୋରଞ୍ଜନ ପାଇଁ ବାଦ୍ୟକାର ଓ ବାଈଜୀଙ୍କୁ ଧରି ।

ରାତିଦିନ ବନ୍ଧୁକରୁ ଗୁଳି ଛୁଟୁଥିଲା । ରାତିଦିନ ଚାଲୁଥିଲା ଖାନା, ପିନା, ଗାନା ଓ ବାଜଣା ।

ଅତିଥିମାନଙ୍କ ମଧ୍ୟରେ ପକ୍ଷୀ ଶିକାରର ପ୍ରତିଦ୍ୱନ୍ଦ୍ୱିତା ଚାଲୁଥିଲା । କାହାର ବନ୍ଧୁକ ଗୁଳିରେ ଗୋଟିଏ ଦିନରେ କେତେ ପକ୍ଷୀ ଧରାଶାୟୀ ହୋଇଥିଲେ, ତାହା

ଏବେ ବି ଏକ ବିରାଟକାୟ ଫଳକରେ ଲିପିବଦ୍ଧ ହୋଇ ରହିଛି ।

ଧୀରେ ଧୀରେ ଏହି ପକ୍ଷୀ-ବିହାରର ଆକର୍ଷଣ କମିଛି । କେଓ୍ଵଲଦେଓ ଡ୍ୟାମରୁ କେନାଲରେ ଏଠିକୁ ପାଣି ଛାଡ଼ିବାକୁ ସ୍ଥାନୀୟ ଲୋକେ ବିରୋଧ କରୁଥିବା ଯୋଗୁଁ ଏଠି ଜଳାଭାବ ଘଟିଛି । ଅଧିକାଂଶ ଭାଗ ଠୋ ଠୋ ଶୁଖିଲା । ନ ହେଲେ ପଙ୍କ କର୍ଦ୍ଦମରେ ଭରା । ଅନ୍ନକଷ୍ଟ ଏବଂ ଜଳକଷ୍ଟ ଯୋଗୁଁ ବେଶୀ ସଂଖ୍ୟକ ପକ୍ଷୀ ବିକଳ୍ପ ଶୀତ ନିବାସ ସନ୍ଧାନ କଲେଣି ବୋଲି ସାରସ ଶୁଣିଥିଲା ।

ସାରସ ପାଖରେ ଅନ୍ୟ ଶୀତ-ନିବାସ ସମ୍ପର୍କରେ କିଛି କିଛି ସୂଚନା ଥିଲା । ସେ କହିଲା–''ଏଥର ଆମେ ଏକ ନୂଆ ଜାଗାକୁ ଯିବା । ମୋ ଶୁଣିବାରେ, ସେଇଟା କୁଆଡ଼େ ଏକ ଲକ୍ଷ୍ମୀଙ୍କ ଭଣ୍ଡାର । ତା'ର ଜଳ ବୈକାଲର ଜଳ ପରି ମଧୁର ନୁହେଁ କିମ୍ବା କାସ୍ପିୟାନର ଜଳ ପରି ଲବଣାକ୍ତ ନୁହେଁ । ସମୁଦ୍ରର ଖରଜଳ ଏବଂ ପାର୍ଶ୍ୱବର୍ତ୍ତୀ ନଦୀମାନଙ୍କର ମଧୁର ଜଳ ଫେଣ୍ଟିହୋଇ, ଯେଉଁ ମିଶ୍ରଣ ସୃଷ୍ଟି ହୁଏ, ତା'ର ସ୍ୱାଦ ଅନନ୍ୟ । ସେଠି ମିଳେ ନାନା ଜାତିର କନ୍ଦ, ନାନା ଫୁଲର ମକରନ୍ଦ । ସେଠି ପୁଣି ମିଳେ ମଧୁର ଶିଉଳି ଓ ସ୍ୱାଦିଷ୍ଟ କନ୍ଦଳୀ । ସେ ହ୍ରଦର ଏକ ପାର୍ଶ୍ୱରେ ଅଛି ଆଦିଗନ୍ତ ସବୁଜ ଶସ୍ୟକ୍ଷେତ୍ର । ହ୍ରଦ କୂଳରେ ସୁଲଭ ନାନା ଜାତିର ତୃଣ ଓ ଶାଗର କୋମଳ ପତ୍ର । କେତେକେତେ ପ୍ରଜାତିର ଗେଣ୍ଡା, ଶାମୁକା, କଙ୍କଡ଼ା, ମାଛ ସେଠି ବର୍ଷସାରା ମିଳେ । ତମକୁ ସେ ସ୍ଥାନ ଭଲ ଲାଗିବ । ଚାଲ, ତୟାରି କର ।''

'ହଉ' କହି ସାରସୀ ଉଡ଼ିଗଲା । ସାରସ ଭାବିଲା ଯେ ଲେନା ନଦୀ କୂଳକୁ ବଲଗାହରିଣ ପଲଙ୍କୁ ଦେଖି ଯାଇଥିବା ସାରସଶାବକଟିକୁ ଡାକିବା ପାଇଁ ବୋଧେ ସେ ଚାଲିଗଲା ।

କିନ୍ତୁ ସାରସୀର ଡାଏରୀରେ ଅନ୍ୟସବୁ କାର୍ଯ୍ୟକ୍ରମ ଥିଲା । ସେ ଲେନା ନଦୀକୂଳକୁ ଉଡ଼ିଗଲା ସତ, କିନ୍ତୁ ପୁତ୍ରକୁ ଡାକିବା ପାଇଁ ନୁହେଁ । ସେଠି ବସବାସ କରୁଥିବା ବକ, ବତକ, କଙ୍କ, କ୍ରୌଞ୍ଚ ପ୍ରଭୃତି ପକ୍ଷୀମାନଙ୍କ ସହ ଆଳାପ କରିବା ତା'ର ଏକ ବଡ଼ ସଉକ । ସେଠି ଗପ କରିବାକୁ ଗଲେ ସେ ଭୋକଶୋଷ ଭୁଲିଯାଏ । ସ୍ୱାମୀ ଓ ସନ୍ତାନଙ୍କ କଥା କିଏ ପଚାରେ !

ନଈକୂଳରେ ପହଞ୍ଚି ସେଠି ଥିବା ପକ୍ଷୀମାନଙ୍କୁ ସାରସୀ କହିଲା–''ଜାଣିଲଣି, ଆମେ ଏଥର ଏକ ନୂଆ ଜାଗାକୁ ଯାଉଛୁ ।''

ତା'ପରେ ସ୍ୱାମୀ ମୁହଁରୁ ଯାହା ଯାହା ଶୁଣିଥିଲା, ସେ ବୃତ୍ତାନ୍ତ ଯାହାକୁ ଦେଖିଲା ବଖାଣିଲା । ବେଳ ଉଛୁର ହୁଅନ୍ତେ, କହିଲା–''ମୁଁ ଯାଏଲୋ ମା, ତେଣେ କେତେ

କାମ ବାକୀ । ତା'ପରେ ସେ ମୋତେ ଦଣ୍ଡେ ଛାଡ଼ି ରହିପାରିବେନି ।''

ସ୍ୱାମୀ ତାକୁ କେତେ ଭଲପାଆନ୍ତି, ଏହି ଧାଡ଼ିଟି ସେ ଏକ ଶତ ବାର କହିଥିବ । ଆଜି ଏକଶତ ଏକତମ ବାର କହିଲା ।

ଏ ଉକ୍ତିଟି ଇତର ପକ୍ଷୀଙ୍କ ବୈଚିତ୍ର୍ୟହୀନ ଜୀବନରେ ଉପହାସର ଖୋରାକ ଯୋଗାଏ ।

କିଏ କହେ–''ଓଲିଟାଏ ।''

କିଏ କହେ–''ବାତୁଳୀଟାଏ ।''

ମଧ୍ୟ ସାଇବେରିଆର ପଠାରରୁ ବାହାରି ଚପଳଛନ୍ଦା ଲେନା ନଦୀ ଉପଳ ବନ୍ଧୁର ଦୀର୍ଘ ପଥ ଅତିକ୍ରମ କରି ବହିଚାଲିଛି ଆର୍କଟିକ ମହାସାଗରକୁ । ଏହି ଲେନା ନଦୀର ଏକ ପାର୍ଶ୍ୱରେ ମାଇଲ ମାଇଲ ଧରି ବ୍ୟାପିଛି ବେତସ ବଣ । ସେହି ବେତ ବଣର ଏକ ପ୍ରାନ୍ତରେ ସାରସର ଘର । ନଳଦଣ୍ଡ, କୋମଳ ତୃଣ ଓ ପତ୍ରରେ ସଜ୍ଜିତ ତା'ର ନୀଡ଼ ।

ତା'ର କେହି ପ୍ରତିବେଶୀ ନ ଥିଲେ । ବକ, କ୍ରୌଞ୍ଚ ପ୍ରଭୃତି ଇତର ପକ୍ଷୀମାନଙ୍କ ପରି ଦଳବଦ୍ଧ ହୋଇ କୌଣସି ବୃକ୍ଷଶାଖାରେ ବାସ କରିବାରେ ସେ ବିଶ୍ୱାସ କରେ ନା । ପୁନଶ୍ଚ, ଈଶ୍ୱର ତାକୁ ଯେପରି ଦୀର୍ଘକାୟ କରିଛନ୍ତି, ତା' ପାଇଁ ଆଖ ପାଖରେ ବୃହଦାକାର ବୃକ୍ଷ କାହିଁ ? ଧୂର୍ତ୍ତ ଶୃଗାଳ, କୋକୀ ଓ ବଣ୍ୟବିଡାଳମାନେ ଭୁଲରେ ମଧ୍ୟ ତା'ର କୁଞ୍ଜ ପଥ ଦେଇ ଚଳାଚଳ କରିବା ପାଇଁ ସାହସ କରନ୍ତି ନାହିଁ । ତୁଷାର ଭଲ୍ଲୁକର ସମ୍ମୁଖୀନ ହେବାକୁ ସେ ଏକାକୀ ମଧ୍ୟ ସକ୍ଷମ ।

ତେଣୁ ଜନମାନବହୀନ ଏକ ଶାନ୍ତ ପରିବେଶ ହିଁ ତା'ର ପ୍ରିୟ । ଇତର ପକ୍ଷୀମାନଙ୍କର ପ୍ରୟୋଜନହୀନ କିଚିରିମିଚିରି ଶବ୍ଦ ତା'ପାଇଁ ବିରକ୍ତିକର । ସତେ ଯେପରି ଆକଣ୍ଠ ଭୋଜନ, ମଳତ୍ୟାଗ ଓ ଗାଳଗଳ୍ପ ଛଡ଼ା ଜୀବନରେ ଆଉ କିଛି କାର୍ଯ୍ୟ ସେମାନେ ଜାଣିନାହାନ୍ତି ।

ଈଶ୍ୱର ଏବଂ ତାଙ୍କର ଏ ସୃଷ୍ଟି ତା' ପାଇଁ ଖୁବ ସୁନ୍ଦର । କ୍ଷିତି, ଅପ, ତେଜ, ମରୁତର ସ୍ପର୍ଶ ତା' ପାଇଁ ଆହ୍ଲାଦକର । ବେଳେବେଳେ ସେ ନଦୀ ଜଳରେ ଗୋଟିଏ ପାଦ ରଖି ସୂର୍ଯ୍ୟଙ୍କୁ ଚାହିଁ ଧ୍ୟାନ କରେ । ଧରଣୀର ନିତ୍ୟ ନୂତନ ବାସ୍ନାକୁ ଆଘ୍ରାଣ

କରେ । ଆକାଶରେ ଅନନ୍ତ ନୀଳିମା, ଧରିତ୍ରୀରେ ଆଦିଗନ୍ତ ବ୍ୟାପ୍ତି, ପତ୍ରରେ ଗାଢ଼ ସବୁଜିମା ଏବଂ ଫୁଲରେ ସୁଗନ୍ଧିତ ପୁଷ୍ପରେଣୁ ଦେଇଥିବାରୁ ଈଶ୍ୱରଙ୍କୁ ସେ ମନେ ମନେ ଧନ୍ୟବାଦ ଦିଏ । ଲେନା ନଦୀର ଶୁଭ୍ର କାଚକେନ୍ଦୁ ଜଳରେ ନିଜର ପ୍ରତିବିମ୍ବ ଦେଖି ସେ ବେଳେ ବେଳେ ମୁଗ୍ଧ ହୁଏ ।

ସେଥିପାଇଁ ନିର୍ଜନତା ତାକୁ ଭଲ ଲାଗେ ।

ଉଡ଼ାଣ ଅଭ୍ୟାସ କରାଇବା ପାଇଁ ଶିଶୁପୁତ୍ରକୁ ସାଙ୍ଗରେ ଧରି ସାରସୀ ଉଡ଼ି ଯାଇଥିଲା ଅନେକ ଦୂରକୁ । ସେ ଦୁହେଁ ଯୋଜନାବଦ୍ଧଭାବେ ତାକୁ ଦୁଇଦିନ ହେଲା ଅଧିକ ମାତ୍ରାରେ ଖାଦ୍ୟ ଦେଉଥିଲେ । ବହୁଦୂର ପଥ ଅତିକ୍ରମ କରିବା ପାଇଁ ଡେଣା ଦୁଇଟି ଶକ୍ତ ହେବା ଆବଶ୍ୟକ । ସେଥିପାଇଁ ତାକୁ ବେଶୀ ସମୟ ଉଡ଼ାଣ ଅଭ୍ୟାସ କରାଉଥିଲେ । ଶାରୀରିକ ଶକ୍ତି ସଙ୍ଗେ ସଙ୍ଗେ ମାନସିକ ଶକ୍ତି ଏକଜୁଟ କରିବା ପାଇଁ ମଧ୍ୟ ଶିକ୍ଷା ଦେଉଥିଲେ ।

ଲେନା ନଦୀର ଜଳ ଯେତିକି ସ୍ୱଚ୍ଛ, ସେତିକି ମଧୁର । ତା'ର ଜଳପାନ ପାଇଁ ବହୁ ଦୂରରୁ ଆସିଥିଲେ ଦଳଦଳ ଶଶକ, ଶୃଗାଳ ଓ ବଲ୍‌ଗାହରିଣ ।

ନଦୀର ଏକ ପାର୍ଶ୍ୱରୁ ଅପର ପାର୍ଶ୍ୱକୁ ଉଡୁଥିବା ସମୟରେ ଉତ୍ସୁକ ଶାବକଟି ବଲଗାହରିଣ ପଲଟିଏ ପାଣି ପିଉଥିବାର ଦେଖିଲା । ସେ ନିଜର ଉଡ଼ାଣକୁ ମନ୍ଥର କରି ମା'କୁ କହିଲା–''ଏଇ ଦେଖ ମା, ପଲେ ବଲ୍‌ଗାହରିଣ । ସେଇଠି ପାଣି ପିଉଛନ୍ତି । କହିଲ, ମା', ସେମାନେ କି ଆମ ସହ ଉଡ଼ିବେ ?''

ସାରସୀ ମନେ ମନେ ବିଗିଡ଼ିଗଲା । ଭାବିଲା, ଉଡୁଥିବା ବେଳେ ଆଗକୁ ନ ଚାହିଁ ଏ ଦୁଷ୍ଟ ପିଲାଟା ତଳକୁ ଚାହିଁଲାଣି । ସବୁବେଳେ ବକବକ କରିବା ଯାର ଅଭ୍ୟାସ । ଯେ କ'ଣ ଶିଖିବ !

ସେ ଚଢ଼ାଗଳାରେ କହିଲା–''ଚୁପ୍ କର, ଚଗଲା ପିଲା । ଆଗକୁ ଦେଖ । ତଳକୁ ନୁହେଁ । ଏମିତି ହେଲେ ତୁ କି ଆମ ସଙ୍ଗରେ ଯିବୁ ! ତୋତେ ଆମେ ଏଠି ଛାଡ଼ି ଚାଲିଯିବୁ ।''

ସାରସ ଶାବକକୁ ଏ କଥା ବାଧିଲା । ସେ ଅଭିମାନରେ ପାଖରେ ଥିବା ଏକ ବୃକ୍ଷ ଶାଖାରେ ଯାଇ ନିରବରେ ବସିଲା ।

ସାରସୀର ମନକଷ୍ଟ ହେଲା । ଭାବିଲା, ବୃଥାଟାରେ ପିଲାଟା ଉପରେ କ୍ରୋଧ କଲି । ବାଚାଳତା ତ ବାଳୁତମାନଙ୍କର ସହଜାତ ପ୍ରବୃତ୍ତି । ପ୍ରଶ୍ନ ପଚାରି ପଚାରି ସେମାନେ ଦୁନିଆକୁ ଜାଣିବେ, ଚିହ୍ନିବେ । ତା'ର ପ୍ରଶ୍ନଟା ମଧ ଅବାନ୍ତର ନ ଥିଲା । ତେବେ ସେ କେମିତି ଏ ଅବୋଧ ବାଳକଟିକୁ ବୁଝାଇବ ଯେ ଈଶ୍ୱର ସମସ୍ତଙ୍କୁ ସମାନ କରି ଗଢ଼ି ନାହାନ୍ତି । କେତେକ ପ୍ରାଣୀଙ୍କ କପାଳରେ କେବଳ ଦୁଃଖ ହିଁ ଉତ୍କୀର୍ଣ୍ଣ । କଷଣ ସହନ ତାଙ୍କର ଭାଗ୍ୟ ଓ ଭବିତବ୍ୟ । ପୁନଶ୍ଚ କେମିତି ସେ ବୁଝାଇବ ଯେ ଖଗ ଓ ମୃଗଙ୍କ ମଧରେ ଆକାଶ ପାତାଳର ପାର୍ଥକ୍ୟ । ମୃଗମାନେ ଧରଣୀର ସନ୍ତାନ । ଧରଣୀର ବକ୍ଷରେ ତାଙ୍କର ଲୀଳାଖେଳା, ଜୀବନ ଓ ଜୀବନାବସାନ । ଅପର ପକ୍ଷରେ ଖଗ ଆକାଶର ଜୀବ । ଉଡ଼ିବା ପାଇଁ ହିଁ ତାଙ୍କର ଜୀବନ ଅଭିପ୍ରେତ । ଏସବୁ ବୁଝାଇବାପାଇଁ ସେ ଭାଷା ଖୋଜି ପାଉନଥିଲା । ଭାବୁଥିଲା, ଏ ସମୟରେ ସାରସ ପାଖରେ ଥାଆନ୍ତେ କି !

ସାରସୀ ଶାବକ ନିକଟରେ ଯାଇ କିଛି ସମୟ ବସିଲା । ତା'ପରେ ତାକୁ ଫୁସୁଲାଇଲା–''ସୁନା ପିଲାଟା ପରା ଉଠ ! ତୋରି ମଙ୍ଗଳ ପାଇଁ କହୁଥିଲି । ତୁ ଠିକ୍ ଭାବେ ଉଡ଼ି ନ ଶିଖିଲେ ତୋର ଡେଣା ଟାଣ ହେବ କେମିତି ? ଏତେ ଲମ୍ବା ବାଟ ଯିବୁ କିପରି ? ତୁ ତ ଏବେ କୁନି ପିଲାଟିଏ ହୋଇନୁ ଯେ ମୁଁ ତୋତେ ପିଠିରେ ବସାଇ ଉଡ଼ାଇ ନେବି । ଚାଲ, ମୋ ଧନଟା... ।''

ଶାବକଟି ସେମିତି ଥୋଡ଼ି ଲମ୍ବାଇ ଥିଲା । ତେଣୁ ସାରସୀ ପୁଣି ବୁଝାଇଲା–''ବଳଗାହରିଣ ସବୁ ଗୋଟିଏ ଗୋଟିଏ ଗଧ । ତାଙ୍କ ବେକରେ ଗାଡ଼ି ଯୋଚାହେବ । ସେମାନେ ଟାଣିବେ । ସେମାନେ କି ଉଡ଼ିବେ ! ଆମେ ହେଲେ ଉତ୍କୃଷ୍ଟ ଜୀବ । ଆମେ କେବଳ ଉଡ଼ିପାରିବା ।''

ତା'ପରେ ଚାଲିଲା ପରିବାରର ସବୁ ସଦସ୍ୟଙ୍କର ମାନସିକ ପ୍ରସ୍ତୁତି । ସେମାନେ ଖାଦ୍ୟର ପରିମାଣ ବେଶୀ ବୃଦ୍ଧି କଲେ । ସାଧାରଣତଃ ଶାକାହାରୀ ଖାଦ୍ୟରେ ସନ୍ତୁଷ୍ଟ ସେମାନେ ଏବେ ଶକ୍ତି ସଂଗ୍ରହ କରିବା ପାଇଁ ଗେଣ୍ଡା, ଶାମୁକା, କଙ୍କଡ଼ା ଓ ମାଛ ପ୍ରଭୃତି ମାଂସାହାରୀ ଖାଦ୍ୟ ଖାଇବାକୁ ଲାଗିଲେ ।

ତା'ପରେ ଆରମ୍ଭ ହେଲା ସାଙ୍ଗସାଥୀମାନଙ୍କ ଠାରୁ ବିଦାୟ ନେବାର ପର୍ବ । ଆଉ କାଳେ କାହା ସହ ଦେଖା ନ ହେବ । ବିଦାୟ ପୂର୍ବରୁ ଟିକିଏ ମନଭରି ତାଙ୍କୁ

ଦେଖି, ଦୁଇଚାରିପଦ ଆଳାପ କଲେ ମନଟା ଉଶ୍ୱାସ ଲାଗିବ । ଲେନା ନଦୀର ପାର୍ଶ୍ୱବର୍ତ୍ତୀ ଶସ୍ୟକ୍ଷେତ୍ର, ଟାଇଗାର ବନଭୂମି—ଏ ସମସ୍ତଙ୍କ ସହ ଜୀବନଟା ଓତଃପ୍ରୋତଃ ଭାବେ ଜଡ଼ିତ । ସେମାନଙ୍କ ଠାରୁ ମଧ୍ୟ ବିଦାୟ ନେବାକୁ ପଡ଼ିବ ।

ସାତଦିନ ଧରି ଏ ବିଦାୟ ପର୍ବ ଜାରି ରହିଲା ।

ଯାତ୍ରାରମ୍ଭ ଦିନ ସେମାନେ ସହଳ ଶଯ୍ୟାତ୍ୟାଗ କଲେ । ପୂର୍ବ ଦିଗରେ ସିନ୍ଦୂରା ଫାଟିଲା । ସୂର୍ଯ୍ୟଦେବଙ୍କର ଉଦ୍ଦୟ ବେଳାକୁ ସେମାନେ ଆଗ୍ରହ ସହକାରେ ପ୍ରତୀକ୍ଷା କରି ରହିଲେ ।

ପଥ ମଧ୍ୟରେ ଆସିପାରେ ତୁଷାର ଲହରୀ । ଅନହୁତି ମାଡ଼ି ଆସିପାରେ ଅଣଚାଶ ପବନ । କେଉଁ ବୃକ୍ଷ ଉହାଡ଼ରେ ଛକିଥାଇ ପାରେ ନିଷାଦର ଉଦ୍ୟତ ଧନୁଶର । ଅଲକ୍ଷ୍ୟରେ କେଉଁ ଅଭାବିତ ଦିଶାରୁ ସହସା ଛୁଟି ଆସିପାରେ କେଉଁ ଶିକାରୀର ବନ୍ଧୁକର ଗୁଳି । ଈଶ୍ୱର ଏ ଧରାଧାମକୁ ପଠାଇଛନ୍ତି । ସେ ହିଁ ସହାୟ ହେବେ । ସେଥିପାଇଁ ସେମାନେ ସୂର୍ଯ୍ୟଙ୍କୁ ପ୍ରଣିପାତ କଲେ ।

ଚାରି ହଜାର ମାଇଲର ଦୀର୍ଘ କଣ୍ଟକିତ ପଥ । ଏକ ଅଜଣା ଜାଗାକୁ ଯିବାପାଇଁ ମନ ଭିତରେ ସୃଷ୍ଟି ହେଉଥିଲା ଯୁଗପତ୍ ଭୟ ଓ ଉତ୍‌କଣ୍ଠା । ଏଣେ ପଛରୁ ଆକର୍ଷଣ କରୁଥିଲା ସାଇବେରିଆର ମାଟି ଓ ପବନର ମହମହ ସୁଗନ୍ଧ । କିନ୍ତୁ ପ୍ରବ୍ରଜ୍ୟା ପାଇଁ ତାଙ୍କର ଜନ୍ମ । ତାଙ୍କୁ ସବୁ ପ୍ରଲୋଭନକୁ ପଛକରି ଯିବାକୁ ପଡ଼ିବ । ଗତି ଛଡ଼ା ତାଙ୍କର ଗତ୍ୟନ୍ତର ନାହିଁ ।

ଭବିଷ୍ୟତ ଅନିଶ୍ଚିତ । ପରିଚିତ ବାସ୍ତୁ ଛାଡ଼ି ଏକ ଅପରିଚିତ ପ୍ରବାସର ସନ୍ଧାନରେ ଯାଉଛନ୍ତି ସେମାନେ । ମନରେ କିଛି ନା କିଛି ସଂଶୟ ଏବଂ ଦ୍ୱିଧା ରହିବା ସ୍ୱାଭାବିକ । ସେଥିପାଇଁ ସେମାନେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ ଯେ ସବୁ ସଂଶୟ ଓ ଦ୍ୱିଧା ଦୂର ହୋଇଯାଉ । ଛାତିରେ ଅପରିମିତ ସାହସ ସଞ୍ଚରୁ ।

ସେମାନଙ୍କର ପ୍ରଥମ ବିରାମ ସ୍ଥଳ ଥିଲା ବୈକାଲ ହ୍ରଦ । ନାଁ ସିନା ବୈକାଲ ହ୍ରଦ ; କିନ୍ତୁ ତିନି ଶହ ନଦୀର ଜଳରେ ପୁଷ୍ଟ ଏହା ଏକ ମଧୁର ସମୁଦ୍ର । ଏହାର କାଚକେନ୍ଦୁ ଜଳ ସ୍ୱଚ୍ଛ ଓ ସ୍ୱାସ୍ଥ୍ୟକର । ଏହାର ଜଳର ଉପରିଭାଗଯାଏ ସୁସ୍ପଷ୍ଟ ହୋଇ ଦିଶନ୍ତି ଶଯ୍ୟାରେ ଥିବା ମୃତ୍ତିକା, ଉଭିଦ ଏବଂ ପ୍ରସ୍ତର ।

ସେଇଠି ସେମାନେ ଆକଣ୍ଠ ଗ୍ରାସ କଲେ । ଯାତ୍ରାର ଅନୁକୂଳ ଓ ପ୍ରତିକୂଳ ପାଗ ସମ୍ପର୍କରେ ଅନୁଭବୀ ପକ୍ଷୀଙ୍କ ଠାରୁ ସୂଚନା ସଂଗ୍ରହ କଲେ । ସାରସ ଜାଣିଥିଲା ଏହାପରେ ଆସିବ ପାମିରର ପଠାର । ସେଠି ଯୁଆଡ଼େ ଚାହିଁବ ଖାଲି ପାହାଡ଼ ହିଁ ପାହାଡ଼ । ଶୁଷ୍କ ଜଳବାୟୁ ଯୋଗୁଁ ସେଠି ଡେଣା ପୋଡ଼ିଯିବାର ଭୟ । ତା' ଭିତରେ ଅଛି ଗୋବି ମରୁଭୂମି । ସେଠି ସୂର୍ଯ୍ୟ କିରଣ ମୃଗତୃଷ୍ଣାର ଭ୍ରମ ସୃଷ୍ଟିକରେ । କିନ୍ତୁ ସେହି ମରୁଭୂମିରେ କୌଣସି ମରୁଦ୍ୟାନ ନାହିଁ । ପାଣି ମୁନ୍ଦାଏ ବିନା ହାହାକାର କରି ସେଠି ଅନେକ ପକ୍ଷୀ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । ତେଣୁ ବୈକାଲ ହ୍ରଦରେ ସେମାନେ ପେଟଭରି ପାଣି ପିଇଲେ ।

ତାଙ୍କର ପରବର୍ତ୍ତୀ ଆଶ୍ରୟସ୍ଥଳ ଥିଲା ତିବ୍ବତ । ସାରସ ଶୁଣିଥିଲା ଯେ ସେ ମାଳଭୂମିରେ ମନୁଷ୍ୟମାନଙ୍କ ଠାରୁ କିଛି ଭୟର କାରଣ ନାହିଁ । ଦୟା ଓ ଦାକ୍ଷିଣ୍ୟରେ ଭରା ସେଠିକାର ଅଧିବାସୀଙ୍କ ହୃଦୟ । ଅହିଂସା ସେ ଭୂମିର ମହାମନ୍ତ୍ର । ଜୀବେ ଦୟା ସେଠି ଜୀବନର ପରମ ଧର୍ମ ।

ସେଠିକାର ଜନବସତିକୁ ସେମାନେ ନିଃସଙ୍କୋଚରେ ଖାଦ୍ୟ ସଂଗ୍ରହ କରିବାକୁ ଗଲେ । ଶାବକଟି ସେଠିକାର ରଙ୍ଗବେରଙ୍ଗ ଦେବାଳୟକୁ ଶହଶହ ଗୈରିକ ବସ୍ତ୍ର ପରିହିତ ଶ୍ରଦ୍ଧାଳୁଙ୍କୁ ଦେଖି ଯଥେଷ୍ଟ ଆନନ୍ଦ ପାଇଲା ।

ତା'ପରେ ତାଙ୍କର ଯାତ୍ରାପଥରେ ଆସିଲା ଆଉ ଏକ ପ୍ରସିଦ୍ଧ ହ୍ରଦ– ମାନସରୋବର । ରାଜହଂସ ଏବଂ କୃଷ୍ଣ ସାରସମାନଙ୍କର ଏହା ଆଶ୍ରୟସ୍ଥଳ । ସାଧୁ, ସନ୍ଥ, ସନ୍ନ୍ୟାସୀ, ବୌଦ୍ଧଭିକ୍ଷୁମାନଙ୍କ ପାଇଁ ଏକ ପବିତ୍ର ତୀର୍ଥ । ସେଠି ତୃଷା-ନିବାରଣ କରି ସେମାନେ ଅଗ୍ରସର ହେଲେ ।

ସମ୍ମୁଖରେ ଦଣ୍ଡାୟମାନ ଥିଲା ହିମାଳୟ ନାମକ ନଗାଧିରାଜ । ପୃଥିବୀର ଉଚ୍ଚତମ ଶୃଙ୍ଗମାନ ଏହି ପର୍ବତ ଶୃଙ୍ଖଳାରେ ବିରାଜମାନ । ସମସ୍ତଙ୍କ ମସ୍ତକରେ ଶୋଭା ପାଉଥିଲା ଗୋଟିଏ ଗୋଟିଏ ତୁଷାର କିରୀଟ । ସେ ପର୍ବତ ଶୃଙ୍ଖଳାର ପାଦଦେଶରେ ଚାରିଆଡ଼େ ବ୍ୟାପି ରହିଥିଲା ଚିରହରିତ ପାଇନ ବଣ । ନଭଶ୍ଚୁମ୍ବୀ ଓକ୍ ବୃକ୍ଷମାନଙ୍କରେ ମେଘମାନେ ନେଉଥିଲେ ସାମୟିକ ଆଶ୍ରୟ । ସାରସ ଶୁଣିଥିଲା ଯେ ଏ ସ୍ଥାନର ନୈସର୍ଗିକ ସୁଷମାରେ ମୁଗ୍ଧହୋଇ ଏଇଠି କୁଆଡ଼େ ଦେବତା, ଗନ୍ଧର୍ବ, ଯକ୍ଷ ଓ କିନ୍ନରମାନେ ଚିରସ୍ଥାୟୀ ବସବାସ କରନ୍ତି ।

ସତକୁ ସତ, ସେ ସ୍ଥାନର ସୌନ୍ଦର୍ଯ୍ୟର ପଟାନ୍ତର ନ ଥିଲା । କିନ୍ତୁ ସେ ନୟନାଭିରାମ ଦୃଶ୍ୟକୁ ଉପଭୋଗ କରିବା ପାଇଁ ସେମାନଙ୍କୁ ଅବକାଶ କାହିଁ ?

ହିମାଳୟର ମୁଷ୍ଟିମେୟ ଗିରି-ସଂକଟ ଖୋଜି ତା' ଭିତର ଦେଇ ତାଙ୍କୁ ଯେ ଭାରତବର୍ଷକୁ ପ୍ରବେଶ କରିବାକୁ ପଡ଼ିବ ।

ତା'ପରେ ସେମାନେ ଉଡ଼ିଲେ ଗଙ୍ଗାର ତ୍ରିକୋଣଭୂମି ଉପରେ । ଗିରିଶୃଙ୍ଗରୁ ଶୃଙ୍ଗ ଯାଏ ଡେଇଁ ଡେଇଁ ଆସିଥିବା ଏ ଗିରିନଦୀ ଏବେ ସଦା ସୁନାବ୍ୟା ଗଙ୍ଗା । ଏତେ ବିଶାଳକାୟ ଚିରସ୍ରୋତା ନଦୀ ସେମାନେ କୁତ୍ରାପି ଦେଖିନଥିଲେ । ସେ ନଦୀର ଅବବାହିକାରେ ଚାରିଆଡ଼େ ଶ୍ୟାମ ଶସ୍ୟର କେଦାର । ମଝିରେ ମଝିରେ ଆମ୍ବ, ପଣସ, ଲିଚୁ, ସପେଟା ପ୍ରଭୃତି ଫଳର ଉଦ୍ୟାନ ।

ସେଠି ଏକ ନଦୀ ପଠାରେ ସେମାନେ ଅଳ୍ପ ସମୟ ପାଇଁ ବିଶ୍ରାମ ନେଲେ । ସେଠି ଅଧିକ କାଳ କ୍ଷେପଣ କରିବାକୁ ନିରାପଦ ମଣିଲେ ନାହିଁ । କାରଣ ସେଠି ଚାରିଆଡ଼େ ଲୋକଙ୍କର ଭିଡ଼ । ସେମାନଙ୍କ ମଧ୍ୟରେ କେତେ ଯେ ନୃଶଂସ ଅଗ୍ଗୁରମାଳା ଘୂରି ବୁଲୁ ନ ଥିବେ କିଏ କହିବ ?

ଏବେ ତାଙ୍କର ଲକ୍ଷ୍ୟସ୍ଥଳ ବେଶୀ ଦୂର ନ ଥିଲା । ହେଇ ଦିଶିଲାଣି ବଙ୍ଗୋପସାଗରର ନୀଳ ଜଳରାଶି । ତା'ର ଉତ୍ତାଳ ବୀଚିମାଳା ଉପରେ ଡଙ୍ଗାସବୁ ଦିଶୁଥିଲେ ଛୋଟ ଛୋଟ ପ୍ରଜାପତି ପରି । ବେଳାଭୂମିରେ ମୁଣ୍ଡ ପିଟୁଥିବା ଢେଉସବୁ ଦିଶୁଥିଲେ ଶହ ଶହ ସରୀସୃପ ପରି ।

ଉପକୂଳର ଚାରିଆଡ଼େ ଥିଲା ତାଳ, ତମାଳ, ପିପ୍ପଳ, ନାରୀକେଳର ବଣ । ଏଠି ସମୁଦ୍ର ସ୍ଥଳଭାଗକୁ ଝୁଙ୍କିପଡ଼ି ସୃଷ୍ଟି କରିଛି ଏକ ବିଶାଳକାୟ ଦୀର୍ଘିକା ।

ତା'ର ନାଁ ଚିଲିକା ।

(୨)

ଶେଷ ସେପ୍ଟେମ୍ବରରେ ଉତ୍ତର କାନଡ଼ାରେ ତୁଷାରପାତ ହେବାକୁ ଆରମ୍ଭ କଲେ ହ୍ୟାରି କ୍ରିଷ୍ଟେନଙ୍କ ଦେହ ମନ ଉଲ୍ଲସିତ ହୋଇଉଠେ । ଏକ ଚପଳମତି ଶିଶୁପରି ତୁଷାର ବର୍ଷାରେ ଭିଜିବା ପାଇଁ ମନ କରି ସେ ଏପରି ଉଲ୍ଲସିତ ହୁଅନ୍ତି ନାହିଁ । ବରଂ ତାଙ୍କୁ ଏ ସମ୍ବାଦଟା ଚେତାଇ ଦିଏ–ଉଠ, କର୍ମବୀର ! ଏ ଶୀତ-ପ୍ରଧାନ ଦେଶରେ ଏବେ ତୁମର କିଛି କାମ ନାହିଁ ।

ପକ୍ଷୀଙ୍କ ଭଳି ତାଙ୍କ ଦେହରେ ଯେପରି ଡେଣା ଗଜୁରେ । ତାଙ୍କ କାନେ କାନେ କେଉଁ ଦୂରଦେଶର ଡାକ ଅନୁରଣିତ କରେ । ସେ ପ୍ରବ୍ରଜ୍ୟା ପାଇଁ ଛକପକ ହୁଅନ୍ତି । ୟୁନିଭର୍ସିଟିରେ ଛୁଟିପାଇଁ ଆବେଦନ କରନ୍ତି ।

ଏଥର ମଧ ସେଭଳି କଲେ । ପ୍ଲେନ ଟିକେଟ ଓ ହୋଟେଲ ବୁକିଂ ପାଇଁ ଏଜେନ୍‌ସୀକୁ ବରାଦ ଦେଲେ । ନିଜର କ୍ୟାମେରା, ଭିଡ଼ିଓ କ୍ୟାମେରା, ବାଇନୋକୁଲାର ଓ ଭାୟୋଲିନ୍ ସମେତ ଅନ୍ୟାନ୍ୟ ଆବଶ୍ୟକୀୟ ଜିନିଷପତ୍ର ସଜାଡ଼ିଲେ । ତା'ପରେ ନିଜର ପତ୍ନୀ ସାରାଙ୍କ ପାଖକୁ ଯାଇ ପୁଷି ବିଲେଇଟିଏ ପରି ଗେହ୍ଲେଇ ହେଲେ ।

ଗଣ୍ଡଦେଶରେ ଗାଢ଼ ଚୁମ୍ବନଟିଏ ପାଇଲା ପରେ ତା' ପଛରେ କିଛି ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଅଛି ବୋଲି ତତ୍‌କ୍ଷଣାତ୍ ଜାଣି ନେଲେ ଚତୁରୀ ସାରା । କିଛିଦିନ ହେଲା ସ୍ୱାମୀଙ୍କ ହାବଭାବରେ ସେ ଅନେକ ପରିବର୍ତ୍ତନ ଲକ୍ଷ୍ୟ କରୁଥିଲେ । ସେ ଠିକ୍

ଭାବେ ଖାଉନଥିଲେ କିମ୍ବା ଠିକ୍ ସମୟରେ ଶୋଉନଥିଲେ । ଠିକ୍ ସମୟରେ ମଧ ଘରକୁ ଆସୁନଥିଲେ । ସାରା ଅନୁମାନ କରୁଥିଲେ ଯେ କ୍ରିଷ୍ଟେନ ଏବେ କେଉଁ ନୂତନ ଦେଶକୁ ଯିବା ପାଇଁ ପ୍ରସ୍ତୁତି କଲେଣି । ସେ ଏକ କାମଖୋର ମଣିଷ । ସେ ତାଙ୍କୁ ଛାଡ଼ି ଚାଲିଯିବେ କେଉଁ ଅଜଣା ରାଜ୍ୟକୁ । କେବେ ଫେରିବେ ଠିକଣା ନାହିଁ । ଗତ ଦଶବର୍ଷର ବୈବାହିକ ଜୀବନରେ ସେ ଏହି ନିଜ ଲୋକଟିକୁ ଭଲଭାବେ ଚିହ୍ନି ସାରିଲେଣି । ତାଙ୍କୁ କାକୁତିମିନତି କରି ବା ଅଭିମାନ କରି ରୋକି ରଖିବା ଅସମ୍ଭବ । ପର ଲାଗିଥିବା ଝଡ଼ିପୋକକୁ ହୁଙ୍କା ଭିତରେ କିଏ ବା ବାନ୍ଧି ରଖିପାରେ !

ତେଣୁ ସେ ସ୍ୱାଭାବିକ ହୋଇ ପଚାରିଲେ—''ଏବେ ବାହାରିଲ କେଉଁ ପକ୍ଷୀର ସନ୍ଧାନ୍‌ରେ ?''

କ୍ରିଷ୍ଟେନ ରସିକତା କରି ସ୍ମିତ ହାସ୍ୟ ସହ କହିଲେ—''ଜୀବନରେ ପକ୍ଷୀ ଥରେ ଧରା ହୁଏ ସାରା ! ମୁଁ ପକ୍ଷୀ ଧରିଛି, କି ପକ୍ଷୀ ମୋତେ ଧରିଛି, ଏହା ଏକ ମିଲିଅନ ଡଲାର ପ୍ରଶ୍ନ । କିନ୍ତୁ ସେ ପକ୍ଷୀ ସହ ମୁଁ ବି ଜାଲରେ ବାନ୍ଧି ହୋଇଯାଇଛି ।''

—''ଜାଲରୁ ମୁକୁଳି ଯିବାକୁ ଚାହଁ ?''

—''ନା, ଜାଲ ସହ ତୁମକୁ ବାନ୍ଧିନେଇ ଉଡ଼ିଯିବାକୁ ଚାହେଁ ।''

—''ହଉ, ରସିକତା ଛାଡ଼ । କେତେ ଦିନ ପରେ ଫେରିବ ?''

ସାରା ଜାଣିଥିଲେ, ଏ ପ୍ରଶ୍ନଟା ଥିଲା ଅବାନ୍ତର । କେତେ ମାସ ପରେ ଫେରିବ, ପଚାରି ଥିଲେ ବୋଧହୁଏ ବେଶୀ ଯୁକ୍ତିଯୁକ୍ତ ହୋଇଥାନ୍ତା । କ୍ରିଷ୍ଟେନ ଯେଉଁ ଉଦ୍ଦେଶ୍ୟ ନେଇ ଯାଆନ୍ତି, ତାହା ପୂରଣ ନ ହେଲେ ଫେରନ୍ତି ନାହିଁ ।

ସେ ଉତ୍ତର ଦେଲେ ଚୁମ୍ବକରେ—''ବହୁତ ଜଲଦି ।''

ହ୍ୟାରି କ୍ରିଷ୍ଟେନ ଜଣେ ଖ୍ୟାତନାମା ପକ୍ଷୀ-ବିଶାରଦ । ବୟସ ଚାଳିଶି ପାଖାପାଖି ହେବ । ମୁହଁରେ ଫ୍ରେଞ୍ଚକଟ ଦାଢ଼ି ସହ ଚଷମା ତାଙ୍କୁ ଖୁବ ମାନେ । ସେ କାନାଡ଼ାର ଓଣ୍ଟାରିଓ ୟୁନିଭର୍ସିଟିର ପ୍ରଫେସର । ପକ୍ଷୀ ବିଶାରଦ ଭାବେ ଅନେକ ସନ୍ଦର୍ଭ ଏବଂ ପୁସ୍ତକ ରଚନା କରି ଗତ ଦଶବର୍ଷରେ ସେ ଯଥେଷ୍ଟ ଖ୍ୟାତି ଲାଭ କରିଛନ୍ତି । ଏ ଯାବତ ତାଙ୍କର ଦୁଇଟି ପୁସ୍ତକ ଆତ୍ମପ୍ରକାଶ କରିଛି । କିନ୍ତୁ ତାଙ୍କର ଜ୍ଞାନର ପିପାସା ମେଣ୍ଟି ନାହିଁ । ଜ୍ଞାନ ଅର୍ଜନ ପାଇଁ ସେ ବର୍ଷରେ ଛ'ମାସ ଯାଯାବର ସାଜନ୍ତି ।

ତାଙ୍କର ପ୍ରଥମ ଗବେଷଣାତ୍ମକ ଲେଖା ପାଇଁ ଲଣ୍ଡନ ଯାଇଥିବା ବେଳେ ଦେଖା ହୋଇଥିଲା ସାରାଙ୍କ ସହ । ସେ ଲଣ୍ଡନବ୍ରିଜ, ହାଇଡ ପାର୍କ ଏବଂ ବକିଂହାମ ପାଲେସ ନିକଟରେ ଥିବା ବିରାଟ ଉଦ୍ୟାନଗୁଡ଼ିକ ବୁଲି ବୁଲି ଗାୟକ ପକ୍ଷୀମାନଙ୍କୁ ନିରୀକ୍ଷଣ କରୁଥିଲେ । ପିଠିରେ ଟ୍ରାଭେଲ କିଟ୍, ହାତରେ ବାଇନୋକୁଲାର ଓ ନୋଟବୁକ ଧରି ସେ ଘୂରି ବୁଲୁଥିଲେ ଲଣ୍ଡନର ଏକ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱକୁ ।

ତାଙ୍କୁ ଅନୁସରଣ କରି ଦିନସାରା ଘୂରି ବୁଲୁଥିଲେ ଆଉ ଜଣେ ସମାନଧର୍ମୀ । କେତେବେଳେ ଅଣ୍ଡରଗ୍ରାଉଣ୍ଡ ଟ୍ରେନ୍‌ରେ ତ କେତେବେଳେ ରେଡ୍‌ବସ୍‌ମାନଙ୍କରେ ଚଢ଼ି ସେ ବୁଲୁଥିଲେ ।

ସେ ଥିଲେ ସାରା । ବାଇଶି ତେଇଶି ବର୍ଷର ତରୁଣୀ । ଅକ୍ସଫୋର୍ଡ ୟୁନିଭର୍ସିଟିର ପି.ଏଚ.ଡି ଛାତ୍ରୀ ।

ହାଇଡପାର୍କରେ ଲତା ଉହାଡ଼ରେ ବସି ଗୀତ ଗାଉଥିବା କିଛି ପକ୍ଷୀଙ୍କୁ କ୍ରିଷ୍ଟେନ ବାଇନୋକୁଲାରରେ ଦେଖୁଥିବା ବେଳେ ତରୁଣୀ ସାରା ବାଇନୋକୁଲାରରେ ତାଙ୍କର ଆପାଦମସ୍ତକ ଅନୁଧ୍ୟାନ କରି ଚାଲିଥିଲେ । ଏହା ଜାଣିପାରି କ୍ରିଷ୍ଟେନ ପକ୍ଷୀ ଦେଖା ସ୍ଥଗିତ କଲେ । ତରୁଣୀ ପାଖକୁ ଯାଇ ସ୍ମିତହାସ୍ୟ ଖେଳାଇ କହିଲେ–''ଆଜି ଦିନରେ ଏହି ମହାନଗରୀରେ ଅନେକ ଜାଗାରେ ଆମର ଭେଟ ହେଲାଣି । କି ଆଶ୍ଚର୍ଯ୍ୟ ! ଲେଟ ଅସ ମିଟ୍ ଫର୍ମାଲି । ଆଇ ଆମ କ୍ରିସ୍ ।''

–''ଆଇ ଆମ ସାରା ! ଅକ୍ସଫୋର୍ଡ ୟୁନିଭର୍ସିଟିର ଛାତ୍ରୀ ।''

–''ବାର୍ଡ ୱାଚିଂ ଇଜ୍ ମାଇଁ ହବି । ହ୍ୱାଟ ଏବାଉଟ ୟୁ ?''

–''ମୋର ?'' ଟଣା ଟଣା ଆଖି ଦୁଇଟିର ଭ୍ରୂଲତାକୁ ଟେକି ସେ କି ଉତ୍ତର ଦେବେ ଭାବିବାକୁ ଲାଗିଲେ ।

–''ମ୍ୟାନ ୱାଚିଂ ?''

–''ସରି ?''

–''ମୋ କହିବା କଥା ଯେ, ଏଇ ଟିକିଏ ଆଗରୁ ଆପଣ ବାଇନୋକୁଲାରରେ ମୋତେ ହିଁ ଦେଖି ଚାଲିଥିଲେ ।''

–''ମୁଁ ଗୋଟିଏ ଜୁଲୋଜି ଷ୍ଟୁଡେଣ୍ଟ । ଯେଉଁ ପ୍ରାଣୀଟି ମୋତେ ଭଲ ଲାଗେ, ମୁଁ ତାକୁ ନିରୀକ୍ଷଣ କରେ ଏବଂ କ୍ୟାମେରାରେ କଏଦୀ କରିବାକୁ ଚେଷ୍ଟା କରେ ।''

–''ଓଃ ଆଇ ସି... । ତା'ହେଲେ ମୋ ଭଳି ପ୍ରାଣୀଟି ଆପଣଙ୍କୁ ଭଲଲାଗିଛି ।''

ଦୁହେଁ ସମସ୍ୱରରେ ହସିଉଠିଲେ ।

କ୍ରିଷ୍ଟେନ ପୁଣି ଆରମ୍ଭ କଲେ–''ଏଇଠି ଆମେ ଠିଆ ହୋଇଥିବା ନା ଏଇ ପପ୍‌ଲାର ଗଛ ତଳେ ବସି ଟିକିଏ ଆଳାପ କରିବା ?''

–''ନା, ହ୍ରଦ କୂଳରେ ଥିବା କଫି-ବାରକୁ ଚାଲନ୍ତୁ । ଆପଣଙ୍କୁ ଦେଖି ଦେଖି ମୋତେ ତୃଷା ଲାଗିଲାଣି ।'' ଓଠରେ ହସ ଫୁଟାଇ ଆଖି ନଚାଇ କହିଲେ ଚତୁରୀ ସାରା ।

ଏଇଠି ସୂତ୍ରପାତ ହୋଇଥିଲା ଏ ରୋମିଓ ଓ ଜୁଲିଏଟ୍‌ଙ୍କ ମଧ୍ୟରେ ପ୍ରଥମ ସାକ୍ଷାତରେ ପ୍ରେମ । ସେଦିନ ସେ ଦୁହିଁଙ୍କର ପାଦ ଆପେ ଆପେ ଟାଣି ହୋଇ ଯାଇଥିଲା, କ୍ରିଷ୍ଟେନ ରହୁଥିବା କ୍ରମୱେଲ କ୍ରାଉନ୍ ହୋଟେଲକୁ । ସେଠି ପ୍ରଥମ ରାତ୍ରିରେ ଏକତ୍ର ସହାବସ୍ଥାନ ସମୟରେ ଫାୟାର ଆଲାର୍ମ ଭୁଲବଶତଃ ବାଜିଉଠିଥିଲା । ସେ ଦୁହେଁ କେବଳ ଚାଦର ଘୋଡ଼େଇ ହୋଇ ଛୁଟିଥିଲେ ତଳକୁ । ସେହି ଅନୌପଚାରିକ ମଧୁଚନ୍ଦ୍ରିକା ରଜନୀର ଅଭାବିତ ଘଟଣା ତାଙ୍କ କର୍ମବ୍ୟସ୍ତ ଜୀବନରେ ଯଥେଷ୍ଟ ହସର ଖୋରାକ ଯୋଗାଏ । ସେ ହସି ହସି ପୁଣି ଲୋଟିପଡ଼ନ୍ତି ପରସ୍ପରର ଆଲିଙ୍ଗନ-ପାଶରେ ।

ସେ ଦୁହେଁ ମିଶି ଲଣ୍ଡନର ଗାୟକ ପକ୍ଷୀମାନଙ୍କ ଉପରେ ଯେଉଁ ସନ୍ଦର୍ଭଟି ପ୍ରସ୍ତୁତ କରିଥିଲେ, ତାହା ଇଂଲଣ୍ଡରେ ଚହଳ ପକାଇଥିଲା । ଇଂଲଣ୍ଡର ସହରମାନଙ୍କରେ ରହୁଥିବା ଗାୟକ ପକ୍ଷୀମାନେ ଏବେ ବଡ଼ ସଂଶୟରେ ପଡ଼ିଛନ୍ତି । ସେମାନଙ୍କ କଣ୍ଠରୁ ସୁମଧୁର ସ୍ୱର ହଜିଗଲାଣି । ଏଥିପାଇଁ ସହରଗୁଡ଼ିକର ଅସଂଖ୍ୟ ମୋଟର ଗାଡ଼ିର ଯାତାୟତ ହିଁ ଦାୟୀ । ଦିନରାତି ମୋଟର ଗାଡ଼ିମାନଙ୍କ ଶବ୍ଦ ଶୁଣୁଥିବା ଏହି ପକ୍ଷୀମାନେ ସେହି ଶବ୍ଦକୁ ଅନୁକରଣ କରି ବିକୃତ ଭାବେ ରାବ କରୁଛନ୍ତି । ଯାହାଫଳରେ ସେମାନଙ୍କ ନିଜର ଅସଲି ଧ୍ୱନିକୁ ସେମାନେ ଭୁଲି ସାରିଲେଣି । ଟ୍ରାଫିକର ଶବ୍ଦ, ବହିର୍ଜଗତର ଅତିରିକ୍ତ କୋଳାହଳ ଭିତରେ ସେମାନେ ସ୍ୱଜାତୀୟ ପକ୍ଷୀଙ୍କ କଣ୍ଠସ୍ୱର ବାରି ପାରୁନାହାନ୍ତି କିମ୍ବା ଅନୁକରଣ କରି ପାରୁ ନାହାନ୍ତି । କାକଳିର ସ୍ୱର ଶୁଣି ପୁରୁଷ ଓ ସ୍ତ୍ରୀ ପରସ୍ପର ଆଡ଼କୁ ଆକର୍ଷିତ ହୁଅନ୍ତି । ସେମାନଙ୍କର ମିଳନ ପ୍ରକ୍ରିୟାରେ ବାଧା ସୃଷ୍ଟି ହେଉଥିବାରୁ ଏ ପକ୍ଷୀଗୁଡ଼ିକର ବଂଶ ଲୋପ ପାଇବାକୁ ଯାଉଛି ବୋଲି ସେ ଦୁହେଁ ଚାଞ୍ଚଲ୍ୟକର ତଥ୍ୟ ପ୍ରକାଶ କରିଥିଲେ ।

ଏହି ସନ୍ଦର୍ଭର ସର୍ବଗ୍ରହଣତା ତାଙ୍କ ଦୁହିଁଙ୍କୁ ଯଥେଷ୍ଟ ଲୋକପ୍ରିୟତା ଓ ପବ୍ଲିସିଟି ଦେବା ସଙ୍ଗେ ସଙ୍ଗେ ବିବାହ ବନ୍ଧନରେ ବାନ୍ଧି ହେବାରେ ସହାୟତା କରିଥିଲା ।

ସେ ଦୁହିଁଙ୍କ ସର୍ବେକ୍ଷଣରୁ ଗାୟକ ପକ୍ଷୀଙ୍କ ସଂଖ୍ୟାରେ ହ୍ରାସ ହୋଇଥିବାର ଜଣାପଡ଼ିଲା ସିନା କିନ୍ତୁ ତାଙ୍କ ନିଜ ପରିବାର ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଗୋଟିଏ ବର୍ଷ ବ୍ୟବଧାନରେ ସାରାଙ୍କ କୋଳକୁ ଆସିଥିଲେ ଦୁଇଟି ସନ୍ତାନ—କନ୍ୟା ଲାରା ଓ ପୁତ୍ର ପିଟର ।

କ୍ରିଷ୍ଟେନଙ୍କ ପରବର୍ତ୍ତୀ ଗବେଷଣାସ୍ଥଳ ଥିଲା ଭର୍ଜିନିଆର ଗ୍ରେଟ୍ ଆମେରିକାନ ସ୍ୱାମ୍ପ । ଏହି ସ୍ଥାନଟି ମାଲାର୍ଡ ଡକ୍‌ମାନଙ୍କର ବିହରଣ ସ୍ଥଳ । ଗୃହ-ଜଞ୍ଜାଳ ଯୋଗୁଁ ଏଥର ତାଙ୍କ ସାଥୀରେ ନ ଥିଲେ ଲାରା । ଦୁଇଟି ଛୋଟ ପିଲାଙ୍କୁ ନେଇ ସେ ରହିଲେ ଟରୋଣ୍ଟୋରେ । କ୍ରିଷ୍ଟେନ୍ ସାଥୀରେ ନେଇଥିଲେ ତାଙ୍କର ଛାତ୍ର ରବର୍ଟ କୋଲ୍ଜିଏଲ୍‌ଙ୍କୁ ।

ରବର୍ଟର ଘର ଆମେରିକାର ନିଉଜର୍ସିରେ । ଶାନ୍ତ ସୁଧୀର ଓ ସୌମ୍ୟଦର୍ଶନ ଯୁବକଟିଏ । ବଡ଼ କଷ୍ଟସହିଷ୍ଣୁ ମଧ୍ୟ । ଦିନ ଦିନ ଧରି ଗବେଷଣାର କୃଚ୍ଛ୍ର ସାଧନା ପାଇଁ ସେ ଥିଲା ଉପଯୁକ୍ତ ।

ଭର୍ଜିନିଆର ଗ୍ରେଟ ଆମେରିକାନ ସ୍ୱାମ୍ପ କୂଳରେ ଗୁରୁ ଶିଷ୍ୟ ଦୁହେଁ ତମ୍ବୁ ପକାଇଲେ ।

ଶହଶହ ମାଇଲ ଧରି ଲମ୍ବିଛି ଏହି ପାଟ ।

—"ଏତେ ବଡ଼ ପାଟ ଦେଖିଛ ରବର୍ଟ ?"

—"ନା ସାର୍, ଏ ତ ପାଟମାନଙ୍କର ପାଟରାଣୀ । ୱାଣ୍ଡରଫୁଲ୍ !"

—"ୟାକୁ ବର୍ଷାଦିନେ ଦେଖିବା କଥା । ବର୍ଷାଦିନେ ଆଖପାଖର ନଦୀମାନଙ୍କର ଉଦ୍‌ବୃତ୍ତ ଜଳଯୋଗୁଁ ଏହାର ଆକାର ଆହୁରି ବଢ଼େ ।"

ସେ ଦୁହେଁ ଆସିଥିଲେ ବସନ୍ତ ଋତୁରେ । ତଥାପି ପାଟରେ ଯଥେଷ୍ଟ ପାଣି ଥିଲା । କେଉଁଠି ଆଣ୍ଠୁଏ ପାଣି ଥିଲା ତ କେଉଁଠି ଜଙ୍ଘେ ପାଣି । କୁହାଯାଏ ଯେ ବର୍ଷା ଦିନେ ପାଟ ମଝିରେ ଥାଏ ଅକାତକାତ ପାଣି । ପାଟର ଚାରିଆଡ଼େ ଭରିଥିଲା ଶୈବାଳ, ବୋରଝାଞ୍ଜି ଏବଂ ଘୋଡ଼ାଦଳ ପ୍ରଭୃତି ଦଳ । କେତେ ଜାଗାରେ

ମୁଣ୍ଡଟେକିଥିଲା ନଳ ଏବଂ ଘୋଲର ଘାସ । ତା' ଭିତରେ ଜାକିଜୁକି ହୋଇ ଦିଶୁଥିଲେ କଇଁଫୁଲ ଏବଂ ନାନା ଜାତିର ଅନାବନା ଫୁଲ ।

ପାଟର ପଙ୍କ ଓ କର୍ଦ୍ଦମ ଭିତରେ କେଉଁଠି ଥିଲେ ଶଂଖ, ଶାମୁକାର ଅବଶେଷ ଏବଂ ପୁନଶ୍ଚ ଅନ୍ୟ ଜଳଜ ଜୀବଙ୍କ କଙ୍କାଳ । ତେଣୁ ସେ ଦୁହେଁ ବଡ଼ ସତର୍କତାର ସହ ପାଣି ଭିତରକୁ ପଶୁଥିଲେ ।

ପାଟର ଚତୁଃପାର୍ଶ୍ୱରେ ଅନେକ ଛୋଟବଡ଼ ବୃକ୍ଷ ପହରା ଦେଲାଭଳି ଠିଆ ହୋଇଥିଲେ । ପାଟ ମଝିରେ ଥିଲେ କିଛି ଥୁଣ୍ଟା ଗଛ । ସେଥିରେ ଚଢ଼େଇ ପଲ ବସିଥିଲେ ।

କ୍ରିଷ୍ଟେନ କହିଲେ–''ଦେଖ, ରବର୍ଟ । ଖୁବ୍ ସୁନ୍ଦର ଦିଶୁଛି ଏ ଚଢ଼େଇ ଗଛ ।''

–''ଚଢ଼େଇ ଗଛ ?'' ଆଶ୍ଚର୍ଯ୍ୟଚକିତ ହୋଇ ରବର୍ଟ ଅନାଇଲା ।

–''ଏ ଗଛ ଚଢ଼େଇ ଫଳାଇବାର ଭ୍ରମ ସୃଷ୍ଟି କରୁନି ?''

ରବର୍ଟ ଏବେ ବୁଝିପାରି ହସିଲା ।

ପାଟ କୂଳରେ ତାଙ୍କର ତମ୍ବୁ ପଡ଼ିଲା ।

ସେଦିନ ସନ୍ଧ୍ୟା ହୋଇ ଯାଇଥିବାରୁ ଆଉ କୁଆଡ଼େ ବୁଲିବାକୁ ଗଲେ ନାହିଁ । ସାଥୀରେ ପୂର୍ବ-ପ୍ରସ୍ତୁତ ଖାଦ୍ୟ ମହଜୁଦ ଥିବାରୁ ରୋଷେଇ କରିବାର ଚିନ୍ତା ନ ଥିଲା । ତେଣୁ ଗୁରୁ-ଶିଷ୍ୟ ତମ୍ବୁ ଭିତରେ ଡ୍ରିଂକ୍ସ ଧରି ବସିଗଲେ ।

ପାଖ ଗଛମାନଙ୍କରେ କିଛି ପକ୍ଷୀ ରାତ୍ରିଯାପନ ପାଇଁ ସ୍ଥାନ ଅକ୍ତିଆର କରୁ କରୁ କଳିତକରାଳରେ ବ୍ୟସ୍ତ ଥିଲେ । ଦୂରରୁ ମାଲାଡ ଡକ୍‌ମାନଙ୍କର କ୍ୱାକ୍ କ୍ୱାକ୍ କ୍ୱାକ୍ ରାବ ରହି ରହି ପବନରେ ଭାସି ଆସୁଥିଲା ।

କ୍ରିଷ୍ଟେନ ରବର୍ଟକୁ ତା'ର ଅତୀତ ସମ୍ପର୍କରେ ପ୍ରଶ୍ନ କଲେ । ରବର୍ଟର ଅତୀତରେ ସେଭଳି କିଛି ରୋମାଞ୍ଚକର ବା ଅବିସ୍ମରଣୀୟ ଅନୁଭୂତି ନ ଥିଲା । ତେଣୁ ସେ ଟିକିଏ ସ୍ମିତହାସ୍ୟ ଛାଡ଼ି ନିରବ ରହିଲା ।

–''ଗୋ ଅନ୍ । ଡୋଣ୍ଟ ବି କଏ ୟଙ୍ଗମ୍ୟାନ୍ ।''

କ୍ରିଷ୍ଟେନ ଜିଦ୍ ଧରିଲେ ।

ରବର୍ଟ ଆରମ୍ଭ କଲା–"ମୋର ଶୈଶବ ଓ କୈଶୋରକୁ ମୁଁ ଭୁଲିଯିବାକୁ ଚାହେଁ । ମୋର ମା' ଥିଲେ କାନାଡ଼ିଆନ୍ । ବାପା ଜର୍ମାନ । ବାପାଙ୍କର ସ୍ମୃତି ମୋ ପାଇଁ ମହଳଣ ପଡ଼ିଗଲାଣି । ସେ କୌଣସି ଡାୟମଣ୍ଡ କମ୍ପାନୀରେ କାମ କରୁଥିଲେ ବୋଲି ଶୁଣିଥିଲି । କିନ୍ତୁ ମୁଁ ଅତି ଛୋଟ ପିଲା ଥିଲାବେଳେ ସେ ମା'ଙ୍କୁ ଛାଡ଼ି ତାଙ୍କ ଦେଶକୁ ଫେରିଯାଇଥିଲେ । ଅଜା ବଞ୍ଚିଥିବାଯାଏ ଅଜାଙ୍କ ଘରେ ଥିଲି । ମା' ଫୁଡ୍ ପ୍ଲାଜା, ରେଷ୍ଟୋରାଁମାନଙ୍କରେ କାମ କରି ମୋର ପ୍ରତିପୋଷଣ କରୁଥିଲା । ପନ୍ଦର ବର୍ଷ ହେଲା ପରେ ପାଠ ପଢ଼ିବା ସଙ୍ଗେ ସଙ୍ଗେ ମୁଁ ବିଭିନ୍ନ କାରଖାନାମାନଙ୍କରେ କାମ କରିବାକୁ ଆରମ୍ଭ କଲି । ପଢ଼ାସାରି ୟୁନିଭର୍ସିଟିରେ ରିସର୍ଚ୍ଚ ସ୍କଲାର ଭାବେ ଯୋଗଦାନ କଲା ପରେ ମା' କର୍କଟ ରୋଗରେ ଶେଷନିଃଶ୍ୱାସ ଛାଡ଼ିଲା । ସେ ଅନେକ ବର୍ଷ ହେଲା ଏ ରୋଗରେ କଷ୍ଟ ପାଉଥିଲେ ବି ମୁଁ ଦୂରରେ ରହି ପଢୁଥିବାରୁ ତା'ର ବିନ୍ଦୁ ବିସର୍ଗ ଜାଣି ପାରିନଥିଲି । ସେ ବି ଏକଥା ମୋ ପାଖରେ ଗୋପନ କରି ରଖିଥିଲା ।"

ତା'ର ଆଖି ଏବେ ଲୁହ ଛଳ ଛଳ ହୋଇଗଲା ।

କହିଲା–"ମା' ପାଇଁ କିଛି କରିପାରିଲି ନାହିଁ ।"

କ୍ରିଷ୍ଟେନଙ୍କ ଆଖି ଆଗରେ ଉଦ୍‌ଭାସିତ ହେଉଥିଲା ତାଙ୍କର ବିଡ଼ମ୍ବିତ ଅତୀତ । ରବର୍ଟ ଭଳି ସେ ମଧ୍ୟ ଏକ ଦରିଦ୍ର ଶ୍ରମିକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବାପା ମା'ଙ୍କୁ ଛାଡ଼ିନଥିଲେ । ମା' ତ୍ୟାଗ କରିଥିଲେ ମଦ୍ୟପ ପିତାଙ୍କୁ । କ୍ରିଷ୍ଟେନଙ୍କ ମନେ ଅଛି ତାଙ୍କର ଦୁଃଖ-ଦୈନ୍ୟର ଶୈଶବର ଦିନଗୁଡ଼ିକ । ଗୋଟିଏ ପ୍ୟାଣ୍ଟ ଗୋଟିଏ ସାର୍ଟରେ ତାଙ୍କର ବର୍ଷ ବର୍ଷ ବିତିଛି । ରବିବାର ଦିନ ଉଲଗ୍ନ ରହି କିମ୍ବା କେବଳ ଚାଦର ବା ତଉଲିଆ ପିନ୍ଧି ସେ ପ୍ୟାଣ୍ଟ ସାର୍ଟ ସଫା କରନ୍ତି । ଗୋଟିଏ ସାର୍ଟର ବହୁଳ ବ୍ୟବହାର ଯୋଗୁଁ ଏତେ ପତଳା ହୋଇଯାଏ ଯେ ସେ ଖରାଦିନେ ବି ତାକୁ କୋଟର ତଳେ ଲୁଚାଇଥାନ୍ତି । ସେଥିପାଇଁ ତାଙ୍କୁ ସାଥୀମହଲରେ ଅନେକ ଥଟ୍ଟା ପରିହାସର ଶରବ୍ୟ ହେବାକୁ ପଡ଼ିଛି ।

ରବର୍ଟ ତା'ର କରୁଣ ଅତୀତ ବୟାନ କରି ଚାଲିଥିଲାବେଳେ ସହାନୁଭୂତିରେ ତାଙ୍କ ଆଖିପତା ଆର୍ଦ୍ର ହୋଇଯାଇଥିଲା ।

ଦୁହେଁ ଅନେକ ସମୟ ନିରବ ରହିଲା ପରେ କ୍ରିଷ୍ଟେନ କଥା ବୁଲାଇଲେ– "କେବେ ପ୍ରେମରେ ପଡ଼ିନ ?"

ସ୍ମିତ ହସି ମୁଣ୍ଡ ହଲାଇ ସେ ନାହିଁକଲା, କହିଲା–"ଦରିଦ୍ର ଯୁବକକୁ କିଏ ପ୍ରେମ କରିବ ?"

ସେଦିନ ଡ୍ରିଂକସରେ ଆଖିପତା ଭାରି ହେବାଯାଏ ସେ ଦୁହେଁ ଗପି ଚାଲିଥିଲେ ।

ତିନି ଦିନ ଧରି ପାଟକୂଳରେ ବାଇନୋକୁଲାର ଲଗାଇ କିମ୍ବା ପାର୍ଶ୍ୱବର୍ତ୍ତୀ ବୃକ୍ଷମାନଙ୍କରେ ଚଢି ପକ୍ଷୀ-ପର୍ଯ୍ୟବେକ୍ଷଣ କଲେ ।

ଦିନେ କ୍ରିଷ୍ଟେନ କହିଲେ—''ଚାଲ ଆଜି ଆମେ ସେହି ଚଢେଇ ଗଛ ପର୍ଯ୍ୟନ୍ତ ଯିବା । ଖାଦ୍ୟ, ପାନୀୟ, ଲାଇଟ ପ୍ରଭୃତି ପ୍ରସ୍ତୁତ କର । ଫେରୁ ଫେରୁ ରାତି ହୋଇଯାଇ ପାରେ । ସେଠି ଅତି ନିକଟରୁ ଡକ୍‌ମାନଙ୍କୁ ଦେଖିବା ।''

ବର୍ଷାତି ଏବଂ ଗମ୍‌ବୁଟ୍‌ରେ ସେ ଦୁହେଁ ନିଜକୁ ସଜ୍ଜିତ କଲେ । ଖାଦ୍ୟ, ପାନୀୟ ବ୍ୟାଗରେ ଠୁଳ କଲେ । ବାଇଗଣୀ ଫୁଲ ଭର୍ତ୍ତି ବିଲାତି ଦଳର ବଣ ଭିତରେ ଚାଲି ଚାଲି ଗଛ ପର୍ଯ୍ୟନ୍ତ ଗଲେ ।

ଗଛ ଉପରେ ଡେରିହୋଇ ନୋଟ୍ ବୁକ୍‌ରେ ତାଙ୍କର ପର୍ଯ୍ୟବେକ୍ଷଣର ତଥ୍ୟ ଲେଖିଚାଲିଥିଲେ କ୍ରିଷ୍ଟେନ୍ । ରବର୍ଟ ବିପରୀତ ଦିଗକୁ ଚାହିଁ ପାଟର ବିଶାଳକାୟତାକୁ ଉପଭୋଗ କରୁଥିଲା ।

କିଛି ସମୟ ପରେ ଟିକିଏ ଦୂରରେ ପାଣିଭିତରୁ ଖୁବ୍ ଜୋରରେ କିଛି ଶବ୍ଦ ହେଲା । ମାଲାର୍ଡ ଡକ୍‌ମାନେ କ୍ୱାକ୍ କ୍ୱାକ୍ କ୍ୱାକ୍ କାତର ଚିତ୍କାର ଛାଡ଼ି ଦଳଦଳ ହୋଇ ଉଡ଼ିଗଲେ ।

—''ରବର୍ଟ । ହୋସିଆର । ବୋଧହୁଏ କ୍ରୋକୋଡାଇଲ । ଚାଲ ଫେରିଯିବା ।''

ଫେରିଯିବା ପାଇଁ ସମୟ ନ ଥିଲା । ହଠାତ୍ କୁମ୍ଭୀରଟିଏ ଲାଞ୍ଜରେ ରବର୍ଟକୁ ପ୍ରହାର କଲା । ସେ ପାଣିରେ ପଡ଼ିଗଲା । ରବର୍ଟର ହୃଷ୍ଟପୁଷ୍ଟ ଶରୀର । ତଥାପି ତା'ର ଗୋଟିଏ ବାହୁକୁ ଧରି କୁମ୍ଭୀରଟି ଟାଣି ନେବାର ଉପକ୍ରମ କରୁଥିଲା । ଦଳ ଭିତରେ ଛନ୍ଦିହୋଇ ଆତ୍ମରକ୍ଷା କରିବାକୁ ଅସମର୍ଥ ହେଉଥିଲା ସେ ।

କ୍ରିଷ୍ଟେନ ଅଭିଜ୍ଞ । ସେ ନିଜ ଅଣ୍ଟାରୁ ଛୁରୀ କାଢ଼ିଲେ । କୁମ୍ଭୀରର ଆଖିକୁ ଲକ୍ଷ୍ୟକରି ବାରମ୍ବାର ଆକ୍ରମଣ କଲେ । ତାଙ୍କୁ ଜଣାଥିଲା କୁମ୍ଭୀରକୁ ପରାସ୍ତ କରିବା ପାଇଁ ତାହାହିଁ ପ୍ରକୃଷ୍ଟ ଉପାୟ ।

କୁମ୍ଭୀର ରବର୍ଟକୁ ଛାଡ଼ି ଲାଞ୍ଜ ପିଟି ପାଣି ଭିତରେ ବୁଡ଼ ଦେଲା । ପାଟର ପଚା ପାଣି ରକ୍ତରେ ଲାଲ ହୋଇଗଲା ।

ରବର୍ଟଙ୍କୁ କୁଣ୍ଢାଇ ଧରି କ୍ରିଷ୍ଟେନ କୂଳକୁ ଫେରିଥିଲେ । ସେ ଭିତରେ ସେ ପେଟଭର୍ତ୍ତି ପାଣି ପିଇ ଦେଇଥିଲା । ତାକୁ ଭୂମିରେ ଶୁଆଇ ତା'ର ପ୍ରାଥମିକ ଉପଚାର କଲେ ସେ ।

ସାଷ୍ଟାମ ହେଲା ପରେ ରବର୍ଟର ଆଖି ଛଳଛଳ ହୋଇଗଲା । କହିଲା, ''ସାର, ଇଉ ହାଭ ଗିଭନ୍ ମି ଏ ନିଉ ଲାଇଫ । ଥାଙ୍କ ୟୁ, ସୋ ମଚ୍ ।''

—''ବେଶୀ କଥାବାର୍ତ୍ତା କରନି । ବିଶ୍ରାମ ନିଅ । ତମର ଅନେକ ରକ୍ତ ବହିଯାଇଛି । କାଲି ସକାଳୁ ଆମେ ଫେରିଯିବା ।''

କ୍ରିଷ୍ଟେନ ତା'ର ମୁଣ୍ଡ ସାଉଁଳାଇ ଦେଲେ । ରବର୍ଟର ଆଖିରୁ ଧାରଧାର ହୋଇ ଲୁହ ଝରିଯାଉଥିଲା । କ୍ରିଷ୍ଟେନ ନ ଥିଲେ ଆଜି ତା'ର କି ଦଶା ହୋଇଥାଆନ୍ତା !

ରବର୍ଟ ଏକ ଭଗ୍ନ ପରିବାରରୁ ଆସିଛି । ପିତା ସ୍ନେହରୁ ସେ ଶୈଶବରୁ ବଞ୍ଚିତ ଥିଲା । ଏଇ କେତେଦିନ ଭିତରେ କ୍ରିଷ୍ଟେନ ତାକୁ ଯେଉଁଭଳି ସ୍ନେହ ଅକାତର ଭାବେ ଦେଇଛନ୍ତି, ତାକୁ ସେ କିଭଳି ଭାବେ ଶୁଝାଇବ, କଳ୍ପନା କରି ପାରୁନଥିଲା ।

ପରଦିନ ଦୁହେଁ ଫେରି ଆସିଥିଲେ ।

ମାଲାର୍ଡ ଡକ୍‌ମାନଙ୍କ ଗତିବିଧି ଉପରେ ପର୍ଯ୍ୟବେକ୍ଷଣ କରି ସେ ଦୁହେଁ ଯେଉଁ ତଥ୍ୟ ପରିବେଷଣ କରିଥିଲେ, ତାହା ପୃଥିବୀରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ପକ୍ଷୀମାନେ ଏକାଧାରରେ ଶୋଇପାରନ୍ତି ଓ ଜାଗ୍ରତ ରହିପାରନ୍ତି । ଏ ଏକ ଅବିଶ୍ୱାସ୍ୟ ଘଟଣା ଭଳି ଲାଗୁଥିଲେ ମଧ୍ୟ ସତ । ପକ୍ଷୀମାନଙ୍କର ଆତ୍ମରକ୍ଷା ପ୍ରବୃତ୍ତି ହିଁ ସେମାନଙ୍କୁ ଏହି ଉପାୟ ଶିଖାଇଛି । ସେମାନେ ଗୋଟିଏ ଆଖିକୁ ଉନ୍ମୁକ୍ତ କରି ଅନ୍ୟ ଆଖିରେ ନିଦ୍ରା ଯାଆନ୍ତି । ସେତେବେଳେ ସେମାନଙ୍କର ମସ୍ତିଷ୍କର ଅର୍ଦ୍ଧଭାଗ ଜାଗ୍ରତ ଥାଏ । ଏହି ପ୍ରକ୍ରିୟାକୁ ସେ ନାମ ଦେଇଥିଲେ ଅନ୍‌ହେମିଷ୍ଫିୟରିକ୍ ସ୍ଲୋ-ଓ୍ୱେଭ ସ୍ଲିପ୍ । ଏପରି ନିଦ୍ରାର ପ୍ରକ୍ରିୟା ବୃଦ୍ଧିପାଏ, ଯଦି ପକ୍ଷୀମାନଙ୍କ ପ୍ରତି ବିପଦର ଆଶଙ୍କା ବଢ଼ିଯାଏ । ମାଲାର୍ଡ ଡକ୍‌ମାନେ ଦଳବଦ୍ଧ ହୋଇ ରହନ୍ତି । ଯେଉଁ ପକ୍ଷୀ ଦଳର ବହିର୍ଭାଗରେ ଶୋଇଥାଏ ସେ ମଧ୍ୟଭାଗରେ ଥିବା ପକ୍ଷୀମାନଙ୍କ ତୁଳନାରେ ଅଧିକ ଜାଗ୍ରତ ଥାଏ । ବାହାରେ ଥିବା ପକ୍ଷୀ ଶତକଡ଼ା ପଞ୍ଚାଅଶୀ ଭାଗରୁ ଅଧିକ ନିଜର ବାହାର ପଟ ଆଖିକୁ ଉନ୍ମୁକ୍ତ କରି ରଖିଥାଏ । ଯେଉଁ ପକ୍ଷୀମାନେ ଦଳର ମଝିରେ ଶୋଇଥାନ୍ତି,

ସେମାନେ ବାହାରପଟ ଓ ଭିତରପଟ ଆଖିକୁ ନିଜ ଇଚ୍ଛାନୁସାରେ ଉନ୍ମୁକ୍ତ କରି ଅପେକ୍ଷାକୃତ ବେଶୀ ନିଶ୍ଚିନ୍ତ ରହନ୍ତି ।

ମାଲାର୍ଡ ଡକ୍‌ମାନଙ୍କ ଉପରେ ପ୍ରକାଶିତ ତାଙ୍କର ପୁସ୍ତକ ତାଙ୍କୁ ଆନ୍ତର୍ଜାତିକ ସ୍ୱୀକୃତି ଦେବା ସଙ୍ଗେ ସଙ୍ଗେ ପ୍ରଚୁର ରୟାଲଟିର ଅର୍ଥ ପ୍ରଦାନ କରିଥିଲା ।

କ୍ରିଷ୍ଟେନ୍ ଏହାପରେ ଏକ ବଡ଼ ପ୍ରକଳ୍ପ ହାତକୁ ନେଇଥିଲେ । ତାହା ହେଲା ସାଇବେରିଆନ୍ କ୍ରେନ୍‌ମାନଙ୍କର ଯାଯାବର ଜୀବନଶୈଳୀ ଉପରେ । ସେ ପଢ଼ିଥିଲେ ଯେ, ସାଇବେରିଆନ ସାରସମାନେ ଶୀତଦିନର ଆରମ୍ଭରେ ଋଷିଆରୁ ଭାରତ, ପାକିସ୍ଥାନ, ଆଫଗାନିସ୍ଥାନ ପ୍ରଭୃତି ଗ୍ରୀଷ୍ମପ୍ରଧାନ ଦେଶମାନଙ୍କୁ ଚାଲିଆସନ୍ତି । ହଜାର ହଜାର ମାଇଲର ବିପଦସଂକୁଳ ମାର୍ଗ ପାରହୋଇ ସେମାନେ ତାଙ୍କର ଶୀତକାଳୀନ ଚାରଣଭୂମିକୁ ଉଡ଼ିଆସନ୍ତି । ବସନ୍ତଋତୁ ପ୍ରାରମ୍ଭରେ ପୁଣି ସେମାନେ ନିଜର ଜନ୍ମଭୂମିକୁ ଫେରିଯାଆନ୍ତି ।

ଏ ପ୍ରବ୍ରଜ୍ୟାର ହେତୁ କ'ଣ ହୋଇପାରେ ? ଯାତ୍ରା ମଝିରେ ଝଡ଼ତୋଫାନ ଓ ପ୍ରାକୃତିକ ବିପର୍ଯ୍ୟୟର ଭୟ । ଶିକାରୀମାନଙ୍କ ଗୁଳିଗୋଳା ବା ଜାଲର ଭୟ । ଦୁର୍ଘଟଣାରେ ଡେଣା ଭାଙ୍ଗି ଯିବାର ବିପଦ । ତଥାପି ସେ ସବୁକୁ ଭ୍ରୂକ୍ଷେପ ନକରି ସେମାନେ ଶୀତଋତୁରେ ଗୃହତ୍ୟାଗୀ ହୁଅନ୍ତି ଏବଂ ବସନ୍ତ ଋତୁରେ କରନ୍ତି ସ୍ୱଦେଶ ପ୍ରତ୍ୟାବର୍ତ୍ତନ । ଏହି ଚକ୍ର ନିୟମିତ ଭାବେ ଚାଲିଥାଏ । ଏଥିରେ ତିଳେମାତ୍ର ବ୍ୟତିକ୍ରମ ହୁଏ ନାହିଁ । ସାରସମାନେ ପୂର୍ବ ବର୍ଷ ଯେଉଁ ଇଲାକାକୁ ଆସିଥିଲେ, ପରବର୍ତ୍ତୀ ବର୍ଷ ମଧ୍ୟ ସେଇଠି ଆସି ଓହ୍ଲାନ୍ତି । ପୂର୍ବ ବର୍ଷ ଯେଉଁ ସମୟରେ ଦେଖା ଦେଇଥିଲେ, ପରବର୍ତ୍ତୀ ବର୍ଷ ମଧ୍ୟ ଠିକ୍ ସେହି ସମୟରେ ପଦାର୍ପଣ କରନ୍ତି । ଏହି ଯାଯାବର ଜୀବନ ଶୈଳୀ ଯୋଗୁଁ ସାରସମାନଙ୍କ ସଂଖ୍ୟା ଧୀରେ ଧୀରେ କମିଗଲାଣି । କିନ୍ତୁ ସେମାନଙ୍କର ପ୍ରବ୍ରଜ୍ୟାର ଅନ୍ତ ନାହିଁ ।

କ୍ରିଷ୍ଟେନଙ୍କୁ ଏହା ଏକ ରହସ୍ୟ ଭଳି ମନେ ହେଉଥିଲା । ପ୍ରବ୍ରଜ୍ୟା ମନୁଷ୍ୟମାନଙ୍କର ଏକ ସହଜାତ ପ୍ରବୃତ୍ତି । କେତେକ ପ୍ରବ୍ରଜ୍ୟା କରନ୍ତି ଅନ୍ନଚିନ୍ତା ଯୋଗୁଁ । ସେମାନେ ନୂଆ ନୂଆ ଚାରଣଭୂମି ଖୋଜି ବସତି ସ୍ଥାପନ କରନ୍ତି ।

କେତେକ ମହାମନୀଷିଙ୍କ ପ୍ରବ୍ରଜ୍ୟା ଧର୍ମପ୍ରଚାର ପ୍ରଭୃତି କିଛି ମହତ୍ ଉଦ୍ଦେଶ୍ୟର

ସାଧନ ପାଇଁ । ଗୌତମ ବୁଦ୍ଧ ଏବଂ ମହାବୀର ପ୍ରଭୃତି ମହାମନୀଷୀ କେବଳ ଚାତୁର୍ମାସ୍ୟା ସମୟରେ ଗୋଟିଏ ସ୍ଥାନରେ ଆସ୍ଥାନ ଜମାଇଥାନ୍ତି । ଅନ୍ୟ ସମୟଗୁଡ଼ିକରେ ସେମାନଙ୍କର ଯାତ୍ରା ଅବ୍ୟାହତ ଥାଏ ।

ଆହୁରି କେତେକ ମହାପୁରୁଷଙ୍କ ମନରେ ଥାଏ ଜ୍ଞାନ-ପିପାସା ଓ ଅନୁସନ୍ଧିତ୍ସା । କଲମ୍ବସ୍, ଭାସ୍କୋଡାଗାମା ପର୍ଯ୍ୟଟନ କରୁକରୁ ଆବିଷ୍କାର କରିଥିଲେ ଦୁଇଟି ମହାଦେଶ । ହୁଏନସାଂ, ଫାହିୟାନ ପର୍ଯ୍ୟଟନ କରୁ କରୁ ବିଶ୍ୱ ଦରବାରରେ ପେଶ କରିଥିଲେ ସ୍ୱର୍ଣ୍ଣପ୍ରସୂ ଏସିଆ ଉପରେ ନୂତନ ଆଲୋକ ।

ସ୍ପେନ୍‌ର ଦୁଃସାହସିକ କଙ୍କ୍ୱିଷ୍ଟାଡରମାନେ ମେକ୍ସିକୋ, ପେରୁ ପ୍ରଭୃତି ଦେଶ ଘୂରି ବୁଲୁଥିଲେ ସୁନା ସନ୍ଧାନରେ । ସେମାନଙ୍କର ଜୀବନଦର୍ଶନ ଥିଲା—ଜୀବନର ମାନେ କିଛି ନାହିଁ । ଯାତ୍ରା ହିଁ ସବୁ କିଛି ।

କିଶୋର ବୟସରୁ କୋଡ଼ିଏ ବର୍ଷ କାଳ ଦେଶ ଛାଡ଼ି ବୁଲୁଥିଲେ ମାର୍କୋପୋଲୋ । ରୋମାଞ୍ଚର ସନ୍ଧାନରେ ସାରା ଜୀବନ ଏସିଆ ଆଫ୍ରିକାର ଗୋଟିଏ ଦେଶରୁ ଆଉ ଗୋଟିଏ ଦେଶର ଭ୍ରମଣରେ ବିତାଇ ଦେଲେ ଇବନ ବତୁତା ।

କ୍ରିଷ୍ଟେନ କେଉଁଠି ପଢ଼ିଥିଲେ ଯେ, ପୃଥିବୀ ଗୋଟିଏ ବିରାଟ ପୁସ୍ତକ ସଦୃଶ । ଯେଉଁମାନେ ଘରେ ବସି ରହନ୍ତି, ସେମାନେ ଏ ପୁସ୍ତକର ମାତ୍ର ଗୋଟିଏ ପୃଷ୍ଠା ମାତ୍ର ପଢ଼ିଥାନ୍ତି । ଏହା ହୃଦବୋଧ କରି ଏ ପର୍ଯ୍ୟଟକମାନେ ଘୂରି ବୁଲୁଥିଲେ ଜଳ, ସ୍ଥଳ, ସମୁଦ୍ର । ସେମାନେ ଖାତିର କରି ନ ଥିଲେ, ଠଗ ଓ ଜଳଦସ୍ୟୁମାନଙ୍କର ଆକ୍ରମଣକୁ, ପ୍ଲେଗ ଓ ମହାମାରୀର ଦୌରାତ୍ମ୍ୟକୁ, ବନ୍ୟା-ବାତ୍ୟା-ଭୂକମ୍ପର ବିଭୀଷିକାକୁ ।

ସେ ଚିନ୍ତା କରୁଥିଲେ ମନୁଷ୍ୟମାନଙ୍କ ପରି ପକ୍ଷୀମାନଙ୍କର ଏହା କ'ଣ ଏକ ଜନ୍ମଗତ ସ୍ୱଭାବ ? ଜୀବନ କ'ଣ ଏକ ମହାଯାତ୍ରା—ଯାହା ବ୍ୟତିରେକ ବଞ୍ଚିବାଟା ଅର୍ଥହୀନ ? ପଶୁ ହେଉ, ପକ୍ଷୀ ହେଉ, ମଣିଷ ହେଉ ଗତିବିନା କ'ଣ ଗତ୍ୟନ୍ତର ନାହିଁ ? ଏହା କ'ଣ ଏକ ଈଶ୍ୱରଙ୍କ ଆଦେଶ ?

ସାରସ ଓ ଅନ୍ୟ ପରିବ୍ରାଜକ ପକ୍ଷୀମାନଙ୍କ ମଧ୍ୟରେ କ୍ରିଷ୍ଟେନ ଏକ ବୈସାଦୃଶ୍ୟ ଲକ୍ଷ୍ୟ କରୁଥିଲେ । ଅନ୍ୟ ପରିବ୍ରାଜକ ପକ୍ଷୀ ଦଳଦଳ ହୋଇ ପର୍ଯ୍ୟଟନ କରନ୍ତି । ସେଥିପାଇଁ ଶାରଦୀୟ ଆକାଶରେ ବେଳେବେଳେ ଗୋଟିଏ ମଲ୍ଲୀମାଳ ପରେ ଆଉ

ଗୋଟିଏ ମଲ୍ଲୀମାଳ ପବନରେ ଉଡ଼ି ଯାଉଥିବାର ଭ୍ରମ ସୃଷ୍ଟି ହୁଏ । ସାରସ ବୋଧେ ଦଳରେ ବିଶ୍ୱାସ କରେ ନାହିଁ । ସେ ବୋଧେ ଭାବେ ଯେ ଦଳରଚନା କରିବା କେବଳ ଇତର ପକ୍ଷୀଙ୍କ ସ୍ୱଭାବ । ତେଣୁ ସାରସ ସବୁ ଯୋଡ଼ିଯାଉଁଳି ହୋଇ ଆସନ୍ତି । ବେଳେବେଳେ ତାଙ୍କ ସହ ଶାବକମାନଙ୍କୁ ଦେଖିବାକୁ ମିଳେ ।

ବେଳେବେଳେ ତା'ଙ୍କର ମନେହୁଏ, ସେ ବୋଧେ ପୂର୍ବ ଜନ୍ମରେ ସାରସ ଥିଲେ । ସାରସ ପରି ତାଙ୍କର ମଧ୍ୟ ପରିବ୍ରାଜକ ଜୀବନ । ବର୍ଷର ଅଧାଭାଗ ସେ ବୁଲୁଛନ୍ତି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ।

କ୍ରିଷ୍ଟେନ କାନାଡ଼ାର ଲୋକ । ଓଣ୍ଟାରିଓ ହ୍ରଦ କୂଳରେ ତାଙ୍କ ଘର । କାନାଡ଼ା ଓ ଆମେରିକାର ସୀମାର ପାଖାପାଖି ଥିବା ପଞ୍ଚ ମହାହ୍ରଦ ମାନଙ୍କ ମଧ୍ୟରୁ ଏ ହ୍ରଦ ଅନ୍ୟତମ । ସେଠି ଚାରିଆଡ଼େ ଖାଲି ଜଳ ଆଉ ଜଳ । କିନ୍ତୁ ବିହଙ୍ଗମାନେ ବିରଳ । ବିହଙ୍ଗ କହିଲେ ଏଠି ଦେଖିବାକୁ ମିଳନ୍ତି କେତେକ ଖାଦ୍ୟ-ଲୋଭୀ ସି-ଗଲ, ହଂସ ହଂସରାଳି ଓ କିଂଗଫିସର । ଅନ୍ୟ ପକ୍ଷୀ ପ୍ରାୟତଃ ଦୃଶ୍ୟମାନ ହୁଅନ୍ତି ନାହିଁ । ସେ ହ୍ରଦମାନଙ୍କରେ ପକ୍ଷୀମାନଙ୍କ ସଂଖ୍ୟାଠାରୁ ନୌକା, ଲଞ୍ଚ ଓ ଜାହାଜମାନଙ୍କ ସଂଖ୍ୟା ଢେର ବେଶୀ ।

ସେଥିପାଇଁ ଏ ପକ୍ଷୀ-ରଙ୍ଗୀ କ୍ରିଷ୍ଟେନ ବୁଲିଛନ୍ତି ଅଷ୍ଟ୍ରେଲିଆ, ଆଫ୍ରିକା, ଦକ୍ଷିଣ ଆମେରିକା ଏବଂ ୟୁରୋପର ଅଧିକାଂଶ ଦେଶ । ତାଙ୍କ ପରବର୍ତ୍ତୀ କାର୍ଯ୍ୟକ୍ଷେତ୍ର ଥିଲା ଭାରତବର୍ଷ ।

ବଙ୍ଗୋପସାଗର କୂଳରେ ପୃଥିବୀର ବୃହତ୍ତମ ଲୁଣି ହ୍ରଦ ଚିଲିକା ସଂପର୍କରେ ସେ ପ୍ରଥମେ ଅବଗତ ହୋଇଥିଲେ ୧୯୭୧ ମସିହାର ରାମସର କନ୍‌ଭେନ୍‌ସନର ରିପୋର୍ଟ ପଢ଼ିଲାବେଳେ । ଆନ୍ତର୍ଜାତିକ ଖ୍ୟାତି-ସମ୍ପନ୍ନ ଜଳାଞ୍ଚଳ (ଓ୍ୱେଟଲାଣ୍ଡ ଅଫ ଇଣ୍ଟରନେସନାଲ ଇମ୍ପୋଟାନ୍‌ସ) ସମ୍ପର୍କିତ ସେମିନାରରେ ପ୍ରଥମ କରି ଚିଲିକା ହ୍ରଦ ଉପରେ ଚର୍ଚ୍ଚା ହୋଇଥିଲା । ସେଠି ପୃଥିବୀ ବାସୀ ଜାଣିଲେ ଯେ ୬୪ କି.ମି. ବ୍ୟାପୀ ଏହି ବିଶାଳକାୟ ହ୍ରଦକୁ ଶୀତଦିନେ ପ୍ରାୟ ତିରିଶ ଲକ୍ଷ ପରିବ୍ରାଜକ ପକ୍ଷୀ ଆସନ୍ତି । ସେମାନେ କେନ୍ଦ୍ର ଓ ଦକ୍ଷିଣ ଏସିଆ, ଋଷିଆ, ଚୀନ, ବ୍ରହ୍ମଦେଶ, ହିମାଳୟ ପର୍ବତମାଳା, କାସ୍ପିୟାନ ସାଗର ଏବଂ ଅନ୍ୟାନ୍ୟ ଦେଶମାନଙ୍କରୁ ଆସିଥାନ୍ତି ।

ଆନ୍ତର୍ଜାତିକ ପ୍ରସିଦ୍ଧି ଲାଭ କରିଥିବା ଏହି ବିହଙ୍ଗ-ବିହାରକୁ ଦେଖିବାର ଲୋଭ କ୍ରିଷ୍ଟେନ୍ ସମ୍ବରଣ କରିଥାନ୍ତେ କିପରି ?

(୩)

ଚିଲିକାରେ ପାଦ ଥାପିଲା ପରେ ସାରସସାରସୀଙ୍କର ଆନନ୍ଦର ସୀମା ନଥିଲା । କେତେ ଦୀର୍ଘ, ପୁଣି କେତେ କଷ୍ଟପ୍ରଦ ଯାତ୍ରା । ତେବେ ସେ ଯାତ୍ରାର ଅନ୍ତ ଘଟିଛି । ତେଣୁ ସେମାନଙ୍କର ଚେହେରାରେ ପରିତୃପ୍ତି ଫୁଟିଆସିବା ସ୍ୱାଭାବିକ ଥିଲା ।

ସେମାନେ ଚିଲିକାର ପାଣି ପିଇଲେ । ଚାରିଗଛର ଫୁଲ ଖୁଣ୍ଟିଲେ । ନଳ ବଣର ଛାଇରେ କ୍ଳାନ୍ତି ଦୂର କଲାବେଳେ ସେମାନେ ଯାତ୍ରାର ସୁଖଦ ସ୍ମୃତିକୁ ରୋମନ୍ଥନ କରୁଥିଲେ ।

—''ହିମାଳୟର ଗିରିକନ୍ଦର ଭିତରେ ଉଡ଼ିଲାବେଳେ ମୋର ତ ହାଡ଼ ବରଫ ହେଲାଭଳି ଲାଗିଲା''—ସାରସୀ କହିଲା ।

—''କଷ୍ଟ କଲେ ତ କୃଷ୍ଣ ମିଳନ୍ତି ।'' ସାରସ ଜବାବ ଦେଲା ।

—''ଯାହା କୁହ, ବଙ୍ଗୋପସାଗର ଦେଖିଲା ପରେ ମୋ ପିଣ୍ଡରେ ପ୍ରାଣ ପଶିଲା ।''

—''ବାପରେ ବାପ, ଏତେ ଦୂର । ମୁଁ ଆଉ ଜମାରୁ ନ ଆସେ ।'' ସାରସ ଶାବକଟି ମନ୍ତବ୍ୟ ଦେଲା ।

—''ଦୂର ଜାଗାକୁ ନ ଗଲେ ଶିଖିବୁ କେମିତି ? ଏବେଠୁ ଏଭଳି କହିଲେ ହେବ । ଏ ଜାଗାକୁ ମନଭରି ଦେଖ । ତା'ପରେ ଆସିବା ନ ଆସିବା କଥା ଚିନ୍ତା କରିବୁ ।''

ଆସିଲା ବେଳେ ଶାବକଟିର ବାଚାଳତା କଥା ତାଙ୍କର ମନେ ପଡ଼ିଲା । ସେମାନେ ଢେଉ ଢେଉକା ମେଘ ଉପରେ ଉଡ଼ି ଉଡ଼ି ଆସୁଥିଲେ । ସେତେବେଳେ ସେମାନଙ୍କୁ ବୋଧ ହେଉଥିଲା, ସତେ ଯେପରି ସେମାନେ ଆକାଶରେ ଉଡୁନାହାନ୍ତି, ସମୁଦ୍ରରେ ପହଁରି ପହଁରି ଚାଲିଛନ୍ତି ।

ସାରସ ଶାବକଟି ସେଦିନ ପ୍ରଥମକରି ଉଡ଼ାଜାହାଜଟିଏ ଦେଖି ପଚାରିଲା– ''ଏଇଟା କି ପକ୍ଷୀ, ମା ?''

–''ସେଇଟା ପକ୍ଷୀ ନୁହେଁ ମଣିଷ ତିଆରି ଯନ୍ତ୍ରଟିଏ ।''

–''ମୁଁ ସେଥିରେ ଟିକିଏ ବସନ୍ତି ।''

–''ତୁ କାହିଁକି ସେଥିରେ ବସିବୁ ? ତୋତେ ଈଶ୍ୱର ତା'ଭଳି ଡେଣା ଦେଇଛନ୍ତି । ତୁ ଚେଷ୍ଟା କଲେ ତା'ର ଉପରକୁ ମଧ୍ୟ ଉଡ଼ିପାରିବୁ । ସେ ଯନ୍ତ୍ରଟି ଆମ ତୁଳନାରେ କିଛି ନୁହେଁ । ସେଇଟି କ'ଣ ଆମ ଭଳି ପବନରେ ହଲି, ହଲି, ଦୋହଲି ଦୋହଲି, ଗ୍ରୀବା ଭାଙ୍ଗି, ଗୋଡ଼ ଛାଟି, ବାମକୁ ଡାହାଣକୁ ମୋଡ଼ି ଯାଇ ପାରିବ ?''

ସାରସ ଶାବକ ବାହାସ୍ଫୋଟ ମାରୁଥିଲା–''ଦେଖିବ, ବଡ଼ ହେଲେ ମୁଁ ଖୁବ୍ ଉପରକୁ ଉଡ଼ିବି । ମୁଁ ସୂର୍ଯ୍ୟ ପାଖକୁ ବି ଉଡ଼ିଯିବି ।''

–''ସେଭଳି ଧୃଷ୍ଟତା କେବେ କରିବୁନି ରେ ବାପା ! ଈଶ୍ୱର ଯେଉଁ ଜୀବକୁ ଯେଉଁ ସୀମା ସରହଦ ଭିତରେ ରହିବା ପାଇଁ ଆଦେଶ ଦେଇଛନ୍ତି, ତାହା ତାକୁ ଡେଇଁବା କଥା ନୁହେଁ । ସେ ନିୟମକୁ ନ ମାନିଲେ ତୋର ସମ୍ପାତି ପକ୍ଷୀର ଦଶା ହେବ ।'' ଏହି ଉପଦେଶ ଦେଇ ସେ ସୂର୍ଯ୍ୟକୁ ଛୁଇଁବାକୁ ଯାଉଥିବା ସମ୍ପାତିର ଡେଣା ଜଳିଯିବା କାହାଣୀ କହିଲା ।

ଶାବକଟିର ବାଚାଳତା ବିଷୟ ମନେ ପକାଇ ସେ ଦୁହେଁ ଆଉଥରେ ହସିଲେ ।

ଏହା ପରେ ପଡ଼ିଲା ନୂଆଜାଗାର ପ୍ରସଙ୍ଗ ।

–''ଏ ଜାଗା ସତରେ କେତେ ସୁନ୍ଦର !''

–''ହଁ, ଆକାରରେ ମଧ୍ୟ ବେଶ ବଡ଼ । ଆଗରୁ ଯେଉଁ ଭରତପୁରକୁ ଆମେ ପ୍ରତିବର୍ଷ ଯାଉଥିଲେ, ଏ ହ୍ରଦ ତୁଳନାରେ ତାହା କିଛିନୁହେଁ ।''

–''ସେ ଜାଗା କି ଅପରିଷ୍କାର ହେଲାଣି ! ସେଥିରେ ପଡ଼ିଥିବା କେନାଲରେ ଖାଲି ପଚାପାଣି, ଅସନା ଓ ଆବର୍ଜନା ଭାସିଆସୁଛି । ସେତିକି ନୁହେଁ, ସେପଟେ ଚାରିଆଡ଼େ ଅଶାନ୍ତି । ଗୁଳିଗୋଳା, ତୋପ, କମାଣର ଶବ୍ଦ ସେଠି ଅହରହ ଶୁଭୁଛି ।''

ତା'ପରେ ସେମାନେ ଚିଲିକାରେ ଘେରାଏ ବୁଲିଲେ । ନଦ, ହ୍ରଦ ଓ ସମୁଦ୍ରର ଏହା ଥିଲା ଏକ ତ୍ରିବେଣୀ ସଂଗମ । ସାରସ ଭାବିଲା, ସେଥିପାଇଁ ବୋଧେ ପକ୍ଷୀମାନଙ୍କ ପାଇଁ ଏହା ଏକ ମହାତୀର୍ଥ ।

ସାରସ ନିଜ ସନ୍ତାନକୁ ଚେତାବନୀ ଦେଉଥିଲା–''ଏଇଟି ହ୍ରଦର ମୁହାଣ । ଏହାର ସରହଦକୁ ଟପି ଆଗକୁ ଯିବୁନି । ସେଠି ଅତଳ ତଳ ଜଳ । ତା' ଭିତରେ କେତେ ଯେ ଭୟାନକ ଶାଙ୍କୁଚ, ମଗର । ପାଲ ଟଣା ଡଙ୍ଗା ପରି ତାଙ୍କ ପାଟି । ଡଙ୍ଗାର ଆହୁଲା ପରି ଲମ୍ବ ତାଙ୍କ ଦାନ୍ତ । ସେଠି ବେଳେବେଳେ ହଠାତ୍ ଆସେ ସାମୁଦ୍ରିକ ଝଡ଼ । ଚାହୁଁ ଚାହୁଁ ମୋଡ଼ିଦେବ ତୋ'ର ବେକ, ହାତଗୋଡ଼ ।''

ବୁଲି ବୁଲି ଶେଷରେ ନଳବଣରେ ସେମାନେ ନିଜ ପାଇଁ ଉପଯୁକ୍ତ ବାସସ୍ଥାନ ଖୋଜିଲେ ।

ସାରସ ଥିଲା ଚିଲିକାର ନୂଆ ପକ୍ଷୀ । ''ନୂଆ ପକ୍ଷୀ, ନୂଆ ପକ୍ଷୀ'' ଆସିଛି ବୋଲି ନଳବଣରେ ହୁରି ପଡ଼ିଗଲା ।

ସାରସ ଉଚ୍ଚତାରେ ଥିଲା ମନୁଷ୍ୟର ସମକକ୍ଷ । ଦେଖିବାକୁ ଖୁବ ସୁନ୍ଦର । ବିଧାତା ଯେପରି ନିହାଣ ମୁଗୁର ନେଇ ନିଜ ହାତରେ ମାପିଚୁପି ଏହି ଭାସ୍କର୍ଯ୍ୟଟିକୁ ଗଢ଼ିଛନ୍ତି । ଖୁବ୍ ସୁନ୍ଦର ଦିଶୁଥିଲା ତା'ର ଧବଳ ମଖମଲୀ ପର । ଏତେ ବଡ଼ ପକ୍ଷୀକୁ କେବେ ଦେଖିନଥିଲେ ଚିଲିକାର ପକ୍ଷୀ-କୂଳ ।

ନଳବଣ କଡ଼େ କଡ଼େ ଭାସୁଥିବା ହଂସ, ହଂସରାଳି ଓ ଅନ୍ୟ ବୈଦେଶିକ ପକ୍ଷୀମାନେ ଆସିଲେ ପହଁରି ପହଁରି । ଚେଁ ଚେଉଁ, ଟେଁ ଟେଇଁ, କୁଣ୍ଡାଖାଇ, ଶଣ୍ଢାଖାଇ, ଘୁଅଖାଇ, ଘାସଖାଇ ପ୍ରଭୃତି ସ୍ଥାନୀୟ ପକ୍ଷୀସବୁ ଉଡ଼ିଆସିଲେ ତକାହକା ହୋଇ ।

ବାଟରେ ଚଢ଼େଇହଗାର ପଥର ଚଟାଣ ତଳେ ବଗମାନେ ବସିଥିଲେ ଥଣ୍ଟକୁ ଲମ୍ବାଇ ।

''ଯିବନିକି ? ନୂଆ ପକ୍ଷୀ ଆସିଛି, ନୂଆ ପକ୍ଷୀ'' ଦେଶୀ ପକ୍ଷୀମାନେ ସମ୍ବାଦ ଦେଲାରୁ କେତେକ ମୁଣ୍ଡ ହଲାଇ କହିଲେ ''ନାହିଁ, ନାହିଁ ।''

ଆଉ କେତେକ ଜଳାଧାରକୁ ଚାହିଁ ମୌନ ବ୍ରତ ଜାରି ରଖିବାରୁ ମନ୍ତବ୍ୟ

ଆସିଲା–''କାଲାବଗ, ଏମାନଙ୍କ କାନକୁ ଶୁଭୁନାହିଁ ।''

ଚିଲ, କୁରୁବକ, ବାଜ, ଛଞ୍ଚାଣ ପ୍ରଭୃତି ଶିକାରୀ ପକ୍ଷୀ ଆକାଶରେ ପଇଁତରା ଦେଲେ । ମନେ ମନେ କକୁଥିଲେ–ଏଥିରୁ ଗୋଟିଏ ପକ୍ଷୀରୁ କେତେ ପଳ ମାଂସ ବାହାରିବ ।

ସବୁଠୁ ପଛରେ ଆସିଲେ ଏରାପକ୍ଷୀମାନେ । ତାଙ୍କ ଗୋଲାପୀ ଡେଣାସବୁ ହଲେଇ ହଲେଇ ଫୁଲେଇ ହୋଇ କହୁଥିଲେ–''ଯେତେ ହେଲେ ଆମ ସରି କେହି ହେବେ ନାହିଁ ।''

ନଳବଣର ବିଳରୁ ଉତ୍ସୁକ କଇଁଛଟିଏ ବେକଟିକୁ କାଢୁଥିଲା, ପୁଣି ଲୁଚୁଥିଲା– ଆଡ଼ି ରାସ୍ତାରୁ ରାଜମାର୍ଗକୁ ଯିବାକୁ ଉଦ୍ୟତ ସାଇକଲିଆ ପରି ।

ବିଦେଶୀ ପକ୍ଷୀମାନଙ୍କୁ ସଖ୍ୟ ସ୍ଥାପନ ପାଇଁ ବେଶୀ ସମୟ ଲାଗିନଥିଲା । ସେମାନେ କୁଶଳ ସମାଚାର ପଚାରିବା ପାଇଁ ସତେ ଯେମିତି ନିଜ ନିଜ ଭିତରେ ପ୍ରତିଯୋଗିତା ଚଳାଇଥିଲେ ।

–''ଆସ, ଆସ, ଆମ କତିରେ ବସ ।''

–''ଖାଇବାକୁ ଦେବୁ ତୁମକୁ ଚାରିଫୁଲ, ସିମ୍ପାଳର ଶସ ।''

–''କେଉଁଠି ତୁମ ଘର ?''

–''ଆମିଷ ଖାଅ କି ? ଏଠି ଖୁବ୍ ମିଳେ ଚିଙ୍ଗୁଡ଼ି, ଖଅଙ୍ଗା, କଙ୍କଡ଼ା ।''

ସାରସ ସାରସୀଙ୍କୁ ପକ୍ଷୀମାନେ ଘେରିଥିଲେ । ସେ ଦୁହେଁ ଦିଶୁଥିଲେ ଦେଖଣାହାରୀଙ୍କ ଭିତରେ ଦୁଇ ବରବଧୂ ପରି ।

–''ସାଙ୍ଗରେ କିଏ ବା ?'' –ପଚାରିଲା କାଲୁଣୀ ବଣି ।

–''ବର କନିଆଁ ପାଖରେ ଆଉ କିଏ ? ମାର୍କୁଣ୍ଡୀ ହୋଇଥିବ ମ !'' – ଉତ୍ତର ଦେଲା କାଣୀ ବାଜେଣୀ ।

ଏକ ହସର ଖୋରାକ ଯୋଗାଇଥିଲା ଏଭଳି ବାର୍ତ୍ତାଳାପ ।

ଅନେକ ସମୟ ବିତିଗଲା । ପକ୍ଷୀମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲେ– ନା, ଏମାନେ ଶାନ୍ତ ସୌମ୍ୟ ପ୍ରକୃତିର ମନେ ହେଉଛନ୍ତି । ଏମାନଙ୍କ ଠାରୁ ଭୟର କାରଣ ନାହିଁ ।

ନଳ ବଣରେ ଅବ୍ୟାହତ ରହିଲା ଶାରଦୀୟ ଉତ୍ସବ ।

ପକ୍ଷୀ-କୂଳରେ ନିଜକୁ ସାମିଲ କରିବା ପାଇଁ ସାରସ ପରିବାରକୁ ବେଶୀ ଦିନ ଲାଗିନଥିଲା ।

କ୍ରିଷ୍ଟେନ ବରକୁଳର ପାନ୍ଥନିବାସରେ ଚେକ୍ ଇନ୍ କଲେ । ଜାତୀୟ ରାଜମାର୍ଗ ଓ ପୂର୍ବତଟ ରେଳ ଲାଇନର ପାର୍ଶ୍ୱରେ ଏହା ଏକ ଲୋକପ୍ରିୟ ଟୁରିଷ୍ଟ ରିସର୍ଟ । ୧୮୮୫ରେ ଏକ ଡାକବଙ୍ଗଳା ଭାବେ ଏହା ବ୍ରିଟିଶ ଶାସକମାନଙ୍କ ଦ୍ୱାରା ଗଢ଼ିଉଠିଥିଲା ।

ଭାରତର ସ୍ୱାଧୀନତା ପରେ ପର୍ଯ୍ୟଟନକୁ ଉତ୍ସାହ ଦେବା ପାଇଁ, ରାଜ୍ୟ ସରକାର ଏହାକୁ ଏକ ମୋଟେଲରେ ପରିଣତ କରିଥିଲେ । ଏବେ ଏହାର ବିସ୍ତାର କରାଯାଇ ଅନେକଗୁଡ଼ିଏ କଟେଜ ତିଆରି ହୋଇଛି ।

ଦେବଦାରୁ, ନିମ୍ବ, ଆମ୍ବ ପ୍ରଭୃତି ଛାୟାପ୍ରଦ ବୃକ୍ଷର ବହୁଳତା ଏ ରିସର୍ଟକୁ ଏକ କଂକ୍ରିଟ ଜଙ୍ଗଲ ହେବାରୁ ବଞ୍ଚାଇ ଦେଇଛି । ଚିଲିକାର କୂଳେ କୂଳେ ଧାଡ଼ି ଧାଡ଼ି ଲାଗିଥିବା ନାରିକେଳ ବୃକ୍ଷ ଏହାର ସୌନ୍ଦର୍ଯ୍ୟ ଦ୍ୱିଗୁଣିତ କରୁଛି ।

ପରଦିନ ପ୍ରଭାତରୁ କ୍ରିଷ୍ଟେନଙ୍କର ଆରମ୍ଭ ହେଲା ଚିଲିକା ଦର୍ଶନ । ହୁଲି ଡଙ୍ଗାଟିଏ ଦିନକ ପାଇଁ ଭଡ଼ାରେ ନେଲେ । ସାଥୀରେ ଗାଇଡଟିଏ ।

ପ୍ରଥମେ ପଡ଼ିଲା ଜଟିଆ ନାସି ପାହାଡ଼ । ସେ ପାହାଡ଼ ଦିଶୁଥିଲା ଏକ ପ୍ରାଗୈତିହାସିକ କୁମ୍ଭୀର ପରି । ତା'ର ପିଠିସାରା ଜମିଥିଲା କୁଢ଼ କୁଢ଼ ଶୈବାଳ ।

ଗାଇଡ ଚିଲିକା ଉପରେ ଖଣ୍ଡି ଇଂରାଜୀରେ ବୟାନ କରିଚାଲିଥିଲା । ଅବଶ୍ୟ ତାଙ୍କର ବୋଧଗମ୍ୟ ହେବା ପାଇଁ କିଛି ଅସୁବିଧା ହୋଇନଥିଲା ।

ଚିଲିକାର ଉତ୍ପତ୍ତି, ତା'ର ଇତିହାସ ଏବଂ ଭୂଗୋଳ, ତା'ର ଅତୀତ ଓ ବର୍ତ୍ତମାନ ସମ୍ପର୍କରେ ଯାହା କିଛି ପଢ଼ିଥିଲା ଏବଂ ଶୁଣିଥିଲା, ସେ ରହି ରହି ବର୍ଣ୍ଣନା କରୁଥିଲା ।

କ୍ରିଷ୍ଟେନ୍ ମନଧ୍ୟାନ ଦେଇ ଶୁଣୁଥିଲେ । ଚିଲିକାର ଅମାନିଆ ଢେଉ ସବୁ ହୁଲି ଡଙ୍ଗାଟିକୁ ଦୋହଲାଇ ପକାଉଥିଲେ । ବେଳେବେଳେ ଡଙ୍ଗା ଭିତରକୁ ପାଣି ପଶି ଆସୁଥିଲା । ତଥାପି କ୍ରିଷ୍ଟେନ ନିର୍ବିକାର ଥିଲେ ।

—''କେତେ ଶହ ବର୍ଷ କହି ହେବନି, ବଙ୍ଗୋପସାଗରରେ ଏକ ବଡ଼ ଧରଣର ଭୂକମ୍ପ ସୃଷ୍ଟି ହୋଇଥିଲା । ଫଳ ସ୍ୱରୂପ, ସମୁଦ୍ରର କିଛି ଅଂଶ ଏକ ବାଲିବନ୍ଧ ଦ୍ୱାରା ବିଚ୍ଛିନ୍ନ ହୋଇ ଏହି ଲବଣାକ୍ତ ହ୍ରଦର ସୃଷ୍ଟି ହୋଇଥିଲା । ଏହି ବିଚ୍ଛିନ୍ନ ଅଂଶଟି ସମୁଦ୍ର ସହିତ ଦୁଇଟି ସ୍ଥାନରେ ସଂଯୁକ୍ତ ହୋଇ ରହିଲା । ଗୋଟିଏ ଅରଖ କୁଦା ନିକଟରେ ଓ ଅନ୍ୟଟି ଋଷିକୁଲ୍ୟା ମୁହାଁଣ ପାଖରେ ।''

—''ଏହି ବୃହଦ୍‌କାୟ ହ୍ରଦର ଦୈର୍ଘ୍ୟ ଚଉଷଠି କିଲୋମିଟର ଏବଂ ପ୍ରସ୍ଥ ଷୋହଳ କିଲୋମିଟର । ଆମ ରାଜ୍ୟର ଦୁଇଟି ଜିଲ୍ଲା—ପୁରୀ ଓ ଗଞ୍ଜାମର ପ୍ରାୟ ଶତାଧିକ ଗ୍ରାମର ଗ୍ରାମବାସୀମାନଙ୍କ ପାଇଁ ଚିଲିକା ମା' ପରି ।''

—''ଓଡ଼ିଶା ଯେ ନୌବାଣିଜ୍ୟ ଯୋଗୁଁ ଦିନେ ପ୍ରସିଦ୍ଧି ଲାଭ କରିଥିଲା, ସେଥିରେ ଚିଲିକାର ଅବଦାନ ଯଥେଷ୍ଟ । ଚିଲିକାରୁ ଆରମ୍ଭ ହେଉଥିଲା ସାଧବ ପୁଅମାନଙ୍କର ଯାତ୍ରା । ଏହି ଚିଲିକାର ଦୁଇ ମୁହାଁଣ ଦେଇ ସେମାନେ ଯାଉଥିଲେ ସୁଦୂର ସିଂହଳ, ମାଳୟ, ଜାଭା, ବାଲି, ସୁମାତ୍ରା ।

କ୍ରିଷ୍ଟେନ୍ ସେହି ପ୍ରଗଳ୍‌ଭ ଗାଇଡ଼କୁ ରୋକି ପଚାରିଲେ—''ଏବେ କ'ଣ ଏ ନୌବାଣିଜ୍ୟ ଅବ୍ୟାହତ ଅଛି ?''

—''ନା, ସାହେବ, ବାରମ୍ବାର ଝଡ଼ତୋଫାନ ଯୋଗୁଁ ଏ ମୁହାଣ ସବୁ ପୋତି ହୋଇଗଲାଣି । ଏବେ ଜାହାଜ ଯିବା ଆସିବା ସମ୍ପୂର୍ଣ୍ଣ ଅସମ୍ଭବ । ଚିଲିକାର ପଡ଼ିଥିବା ନଦୀଗୁଡ଼ିକ ବୋହି ଆଣୁଥିବା ପଟୁମାଟି ଯୋଗୁଁ ଚିଲିକାର ଗଭୀରତା ଦ୍ରୁତ ଗତିରେ ହ୍ରାସ ପାଉଛି ।

ଡଙ୍ଗାଟି ଢେଉ କାଟି କାଟି ହାଉଲେ ହାଉଲେ ଚାଲିଥିଲା । ବାଟରେ ଗୋଟିଏ ଜାଗାରେ ଆହୁଲା ରଖି ନାଉରୀଟି ଡାହାଣପଟକୁ ନଇଁ ଦୁଇ ହାତଯୋଡ଼ି ନମସ୍କାର କଲା । ଗାଇଡଟି ମଧ୍ୟ ତା'ର ଅନୁକରଣ କଲା ।

—''ଏଠି କ'ଣ ଅଛି ?'' କ୍ରିଷ୍ଟେନ ପ୍ରଶ୍ନ କଲେ ।

—''ଏଇ ଟିକିଏ ଦୂରରେ କାଳିଜାଈ ପାହାଡ଼ । ଏଠି କାଳିଜାଈ ଠାକୁରାଣୀଙ୍କ ମନ୍ଦିର ଅଛି । ସେ ଏହି ଅଞ୍ଚଳର ପ୍ରତ୍ୟକ୍ଷ ଦେବୀ । ଏଇ ସ୍ଥାନକୁ ନେଇ ଏକ ଏକ କରୁଣ କିମ୍ବଦନ୍ତୀ ଅଛି ।''

—''କ'ଣ ସେ କାହାଣୀ ?''

ଉତ୍ସାହିତ ହୋଇ ଗାଇଡଟି କହିଚାଲିଲା–''ଜାଇ ଏକ ଗରିବ ଘରର ଝିଅ । ଚିଲିକା ପାଖରେ ବାଣପୁରରେ ତା'ର ବାପଘର । ନବବିବାହିତା ଜାଇ ନିଜ ଶାଶୂଘର ପାରିକୁଦକୁ ଡଙ୍ଗାରେ ଯାଉଥିଲା । ହଠାତ୍ କଳାହାଣ୍ଡିଆ ମେଘ ଘୋଟି ଆସିଲା । ଆସିଲା ଅଦିନ ବର୍ଷା ଓ ତୋଫାନ । ଡଙ୍ଗାଟି ଏ ପାହାଡ଼ରେ ପିଟି ହୋଇଗଲା । ଜାଇ ଚିଲିକା ଗର୍ଭରେ ସଳିଳ ସମାଧି ଲଭିଲା । ସେହି ଦିନଠାରୁ ଜାଇ କାଳିଜାଇ ନାମରେ ଏଠି ପୂଜା ପାଉଛି । ବର୍ଷା ଓ ଝଡ଼ତୋଫାନରୁ ରକ୍ଷା ପାଇବା ପାଇଁ ସବୁ ନାଉରିଆ ଏହି ଠାକୁରାଣୀଙ୍କୁ ସୁମରଣା କରିଥାନ୍ତି ।''

ଗାଇଡର କାହାଣୀରେ ବିହ୍ୱଳିତ ନାଉରିଆ ମୁହଁରେ କିଏ ଯେମିତି ଓଡ଼ିଶା ପ୍ରସିଦ୍ଧ ଗୀତିକବିତାର କେଇପଦ ଭରିଦେଲା–

''ଭଲକରି ନାଆ ବୁହାରେ ନାଉରୀ, ଝିଅକୁ ମାଡୁଛି ଡର ।

ଗଡ଼େ ଗଡ଼ ଲୋକେ ଚାହିଁ ବସିଥିବେ, ଝିଅ ଯିବ ଶାଶୂଘର ।''

ଗାଇଡଟି ଧୀରେ କହିଲା–''ଏଇଟି ସେ ଜାଇ ଉପରେ ଲେଖା ହୋଇଥିବା ଗୀତିକବିତା ।''

କ୍ରିଷ୍ଟେନ କହିଲେ–''ନାଉରିଆକୁ କୁହ, ସେ ଏହି ଗୀତଟି ବୋଲିଚାଲୁ ।''

ନାଉରିଆ ଟିକିଏ ମୁରୁକି ହସି ଗାଇଚାଲିଲା ।

କବିତାର ବିନ୍ଦୁ ବିସର୍ଗ ବୁଝି ପାରୁନଥିବା କ୍ରିଷ୍ଟେନ୍ ତନ୍ମୟ ହୋଇଗଲେ ଏ କବିତାଟିର କାରୁଣ୍ୟରେ ।

କହିଲେ–''ଏ ଗୀତର ଛତ୍ରେ ଛତ୍ରେ ବୋଧହୁଏ ଭରି ରହିଛି ଅନ୍ତହୀନ ଦୁଃଖ ଓ ଦହନର ଚିତ୍ର ।

ଗାଇଡ୍ ବଖାଣୁଥିଲା–''ଓଡ଼ିଆ ଝିଅ ଶାଶୂଘରକୁ ଗଲାବେଳେ ଗୋଟିଏ ନିରୁତା କବି ପାଲଟିଯାଏ । ମନ ଗହନର ପୁଞ୍ଜୀଭୂତ ଦୁଃଖକୁ ସେ କବିତାରେ ଭଣିଯାଏ । ନାଆରେ ଗଲାବେଳେ ଜାଇର ଆଖିରୁ ଅବାରିତ ଲୁହ ଝରୁଛି । ତଥାପି ସେ ଗୀତ ଗାଇଚାଲିଛି । ପାର୍ଥିବ ଶରୀରଟାକୁ ଠେଲି ଠେଲି ନାଆ ଚାଲିଛି ଆଗକୁ ଆଗକୁ । କିନ୍ତୁ ଜାଇର ମନଟା ଫେରିଚାଲିଛି ପଛକୁ ପଛକୁ । ମନେ ପଡୁଛନ୍ତି ମା' ଭଉଣୀ ଏବଂ ସାଙ୍ଗସାଥୀ । ମନେପଡୁଛି ଗାଁ ପାହାଡ଼ ଘଣ୍ଟଶିଳା । ମନେପଡୁଛି ଗାଁର ନଈ ଶାଳିଆ । ମନେ ପଡୁଛନ୍ତି ଗାଁର ଭଗବତୀ

ଠାକୁରାଣୀ । ତାଙ୍କୁ ସାହା ପକ୍ଷ ହେବାକୁ ସେ କରୁଛି ବିନମ୍ର ଦଇନୀ । ମନରେ ତା'ର ଆଉଟା ଆଶଙ୍କା । ପରିଚିତ ଲୋକଙ୍କୁ ଛାଡ଼ି ସେ ଯାଉଛି ଅଜଣା ଲୋକଙ୍କ ଗହଣକୁ । ତା'ର ଗନ୍ତବ୍ୟ ସ୍ଥାନର ନାଁ ପାରିକୁଦଗଡ଼ । କିନ୍ତୁ ତାକୁ ଲାଗୁଛି ତାହା ଜନ-ମାନବ-ଅଧ୍ୟୁଷିତ ଏକ ଗଡ଼ ନୁହେଁ, ସତେ ଯେପରି ଏକ ହିଂସ୍ର-ପଶୁ ସଂକୁଳ ଏକ ଅଗନାଗ୍ନି ବନସ୍ତ । ଶସ୍ୟ-କେଦାର ସମନ୍ୱିତ ଏକ ରାଇଜ ନୁହେଁ, ହା-ହୁତାଶମୟ ଏକ ଅଥଳ ସମୁଦ୍ର ।''

ନଳବଣ ପାଖେଇ ଆସିଲା । କ୍ରିଷ୍ଟେନ ବାଇନୋକୁଲାରକୁ ଆଖିରେ ଖଞ୍ଜି ଆସୁଥିଲେ ।

ସେଠି ଏକ ବିରାଟ କାର୍ନିଭାଲ ଚାଲିଥିଲା ଭଳି ତାଙ୍କୁ ମନେ ହେଉଥିଲା । ଯୁଆଡ଼େ ଆଖି ପାଉଥିଲା, ସେଆଡ଼େ ଖାଲି ପକ୍ଷୀ ଆଉ ପକ୍ଷୀ । ଛୋଟ ବଡ଼, ରଙ୍ଗ ବେରଙ୍ଗ, ଜାତିଜାତିର ପକ୍ଷୀ । ଏତେ ପ୍ରଜାତିର ଏବଂ ଏତେ ସଂଖ୍ୟକ ପକ୍ଷୀଙ୍କ ସମାଗମ ଗୋଟିଏ ସ୍ଥାନରେ ସେ କୁତ୍ରାପି ଦେଖିନଥିଲେ । ସେମାନଙ୍କର କୋଳାହଳରେ ପ୍ରକମ୍ପିତ ହେଉଥିଲା ନଳବଣ । ସେଠିକୁ ଦଳଦଳ ପକ୍ଷୀ ଆସୁଥିଲେ ଏବଂ ଯାଉଥିଲେ । କେତେକ ପାଖ ଜନବସ୍ତିରୁ ଆସୁଥିଲେ । ଆଉ କେତେକ ଫେରି ଯାଉଥିଲେ ପାର୍ଶ୍ୱବର୍ତ୍ତୀ ଝାଉଁ କିମ୍ବା ବାଗୁଲା ବଣକୁ ।

ସେ ବାଇନୋକୁଲାର ଲଗାଇ ପକ୍ଷୀଙ୍କ ଗତିବିଧି ଲକ୍ଷ୍ୟ କରୁଥିଲେ । ସେଠି ଯେମିତି ଏକ ରୀତିମତ ମେଳା ଲାଗିଥିଲା । କେଉଁଠି ଚାଲିଥିଲା ଯୁକ୍ତିତର୍କ, କେଉଁଠି ବାକ୍ ବିତଣ୍ଡା । କେଉଁଠି କିଛି ପକ୍ଷୀ ଯେମିତି ଅର୍କେଷ୍ଟ୍ରା ଚଲାଇଥିଲେ ତ ଆଉକିଛି ପକ୍ଷୀ ସମଝଦାର ଶ୍ରୋତା ଭଳି ମୁଣ୍ଡ ଟୁଙ୍ଗାରୁଥିଲେ । କେଉଁଠି ବୈଦେଶିକୀ ପକ୍ଷୀମାନେ 'ସାମ୍ବା' ବା 'ସାଲସା' ପରିବେଷଣ କରୁଥିବା ବେଳେ ସ୍ଥାନୀୟ ପକ୍ଷୀମାନେ ପରିବେଷଣ କରୁଥିଲେ ଗୋଟିପୁଅ ନୃତ୍ୟ । ଏ କାର୍ଯ୍ୟକ୍ରମକୁ ଉପଭୋଗ କରିବା ପାଇଁ ଛୋଟେଇ ଛୋଟେଇ ଦଉଡ଼ିଥିଲା ଚୋକର-ପ୍ରତିମ ପେଲିକାନ । କେଉଁଠି ପକ୍ଷୀ-ଶାବକଟି ପିତା ବା ମାତାର ପିଠି ଉପରେ ଚଢ଼ି ଏହି କାର୍ଯ୍ୟକ୍ରମକୁ ଉପଭୋଗ କରୁଥିଲା । କେଉଁଠି ଉଚ୍ଚ ଟାପୁରେ ବସି କୌଣସି ପକ୍ଷୀ ସତେ ଯେପରି ସ୍ୱରଚିତ କବିତା ଆବୃତ୍ତି କରୁଥିଲା । କେତେକ ହଂସରାଳି ଏସବୁ ଶୁଣୁଶୁଣୁ ଗ୍ରୀବା ଭାଙ୍ଗି ଶୋଇପଡ଼ିଥିଲେ ।

ବାଇନୋକୁଲାରରେ କ୍ରିଷ୍ଟେନ ଦେଖିଲେ କଳରୋଳ ଠାରୁ ଦୂରରେ ଗମ୍ଭୀର

ହୋଇ ବସିଥିଲା ବୃହତ୍‌କାୟ ପକ୍ଷୀଟିଏ । ଦେହସାରା ତୁଷାର ଧବଳ ପର । ଲମ୍ବ ଲମ୍ବ ରକ୍ତ କରବୀର ପାଦ । ନାରଙ୍ଗୀ ମସ୍ତକ । ସେ ହିଁ ଥିଲା ସାଇବେରିଆର ସାରସ । ସାରସ ସାରସୀଙ୍କର ସମ୍ଭ୍ରାନ୍ତ ରୂପ ଦେଖି ମୁଗ୍ଧ ହୋଇଥିଲେ ସେ ।

ହୁଲି ଡଙ୍ଗାଟି ଆଉ ଆଗକୁ ଯିବାର ବାଟ ନ ଥିଲା । ଜଳ ଅଗଭୀର ଥିଲା । ତା' ସଙ୍ଗେ ସଙ୍ଗେ ସେ ସ୍ଥାନଟି ବିଭିନ୍ନ ପ୍ରକାର ଦଳରେ ଭର୍ତ୍ତି ଥିଲା । ତେଣୁ ସେମାନେ ଡଙ୍ଗାରୁ ଓହ୍ଲାଇଲେ ।

ତାଙ୍କୁ ଦେଖି କେ-କେ-କେ-କେ—କିଏ ଆସୁଛି-କିଏ ଆସୁଛି—ଶବ୍ଦକରି ଉଡ଼ିଗଲେ ମୟୂରଙ୍କା ମିଥୁନ । କ୍ୱାକ୍-କ୍ୱାକ୍-କ୍ୱାକ୍ ରାବ କରି ଡେଣା ବାଡ଼େଇ ଦୂରକୁ ଉଡ଼ିଗଲେ ଗେଣ୍ଡୀ ବତକର ଗୋଟିଏ ଦଳ ।

ଆଙ୍କ୍-ଆଙ୍କ୍-ଆଙ୍କ୍—ଆକ୍ରମଣ—ଏମିତି କର୍କଶ ଚିତ୍କାର କରି ଉଡ଼ିଗଲା ଏରା ପକ୍ଷୀର ଯୂଥ ।

ହୁଇସିଲ୍ ଫୁଙ୍କି ଓ୍ୱିର-ଓ୍ୱିର-ଓ୍ୱିର—''ହୋସିଆର, ହୋସିଆର'' ରଡ଼ି ଛାଡ଼ି ଆକାଶରେ ପଇଁତରା ଦେଲା ଖାକୀ ପୋଷାକଧାରୀ ଚିଲିକାର ଚୌକୀଦାର—ମାଟିଆ ଚିଲ ।

ନଳବଣରେ ଏବେ କଳରୋଳ ସ୍ତିମିତ ହୋଇଗଲା ।

ଗୋରା ସାହେବ ଓ ଗାଇଡ ଦୁହେଁ ପାଖକୁ ଆସୁଥିବାର ଦେଖି ସାରସ ଲମ୍ବ ଲମ୍ବ ପାହୁଣ୍ଡ ପକାଇ କିଛି ବାଟ ଆଗକୁ ଚାଲି ପରିସ୍ଥିତିର ସର୍ବେକ୍ଷଣ କଲା । ତା'ପରେ ତା'ର ବିଗୁଲ ବାଦ୍ୟ ସଦୃଶ ଉଚ୍ଚଗଳାରେ କହିଲା—''ଭୟ କରନାହିଁ, ଭାଇ ଓ ଭଉଣୀମାନେ । ଏ ଆଗନ୍ତୁକ ଦୁହେଁ ଶତ୍ରୁ ନୁହନ୍ତି । ତାଙ୍କ ହାତରେ ଥିବା ଯନ୍ତ୍ର ବନ୍ଧୁକ ନୁହେଁ, ତାହା ଦୂର ଜାଗାର ଦୃଶ୍ୟ ଦେଖିବା ଯନ୍ତ୍ର ।''

କ୍ରିଷ୍ଟେନ କ୍ୟାମେରା ଖୋଲି ଫଟୋ ପରେ ଫଟୋ ଉଠାଇ ଚାଲିଥିଲେ । ସେଥିରୁ ଅଧିକାଂଶ ଥିଲା ସାରସ-ଦମ୍ପତି ଓ ସାରସ ଶାବକର । ଏହି ଫଟୋ ଉତ୍ତୋଳନ ବୋଧହୁଏ ସାରସକୁ ଲାଗୁଥିଲା ବଡ଼ ଆହ୍ଲାଦକର । ସାରସ ବିଭିନ୍ନ ଠାଣି କରି ଶେଷରେ ଉଡ଼ିଯାଇ ବସିଲା କ୍ରିଷ୍ଟେନଙ୍କ ହୁଲି ଡଙ୍ଗା ଉପରେ ।

ସେହି ଦିନଠାରୁ ଆରମ୍ଭ ହେଲା ସାରସ ଓ କ୍ରିଷ୍ଟେନଙ୍କ ମଧ୍ୟରେ ଏକ ସଘନ ସଜଳ ସମ୍ପର୍କ । ମାନବ ଓ ବିହଙ୍ଗ ମଧ୍ୟରେ ଏକ ନିରବ ନିବିଡ଼ ସମ୍ଭାଷଣ ।

ଏଇଠି ସୂତ୍ରପାତ ହେଲା ମାନବ ଓ ବିହଙ୍ଗ ମଧ୍ୟରେ ଏକ ଅନବଦ୍ୟ ପ୍ରେମ କାହାଣୀ ।

ଏ ଅଞ୍ଚଳର ଜଳବାୟୁ ସହିତ ଅପରିଚିତ କ୍ରିଷ୍ଟେନ ପ୍ରଥମ ଦିନ ଟି-ସାର୍ଟଟିଏ ପିନ୍ଧି ଚିଲିକା ଭିତରକୁ ଯାଇଥିଲେ । ଫେରିଲା ବେଳେ ଦେଖିଲେ ତାଙ୍କ ହାତର ଅନାବୃତ ଅଂଶଟି ସନ୍-ବର୍ଣ୍ଣ ହୋଇ କଳା ପଡ଼ିଯାଇଥିଲା ।

ଏଣିକି ପ୍ରତ୍ୟେକ ଦିନ କ୍ରିଷ୍ଟେନ ନିଜର ଗବେଷଣା କାର୍ଯ୍ୟ କରିବା ପାଇଁ ଯାଆନ୍ତି । କେତେଥର ଆସନ୍ତି ଏକା ଏକା । ବନବିଭାଗର କର୍ମକର୍ତ୍ତାଙ୍କ ଅନୁମତି ନେଇ ନଳବଣର ଟାୱାର ଉପରେ ବସିରହନ୍ତି । ବାଇନୋକୁଲାର ଲଗାଇ ପକ୍ଷୀମାନଙ୍କ ହାବଭାବ ଲକ୍ଷ୍ୟ କରନ୍ତି । ଭିଡ଼ିଓ କ୍ୟାମେରାରେ ଫଟୋ ଉତ୍ତୋଳନ କରନ୍ତି ।

ଟାୱାର ଉପରୁ ଦିନେ ସେ ଦେଖିଲେ ଏକ ଅଭାବିତ ଦୃଶ୍ୟ । ସାରସ ସାରସୀଙ୍କର ପ୍ରେମନିବେଦନର ଦୃଶ୍ୟ । ସାରସର ମସ୍ତକ ଝୁଙ୍କିଥିଲା ପଛକୁ । ଚଞ୍ଚୁ ଉତ୍ତୋଳିତ ହୋଇଥିଲା ଊର୍ଦ୍ଧ୍ୱକୁ । ଡେଣା ହଲାଇ ସେ ଡାକ ଦେଉଥିଲା । ପ୍ରତ୍ୟେକ ଡାକର ଜବାବ ଦେଉଥିଲା ସାରସୀ । ମସ୍ତକ ହଲାଇ, ଶରୀର ଦୋହଲାଇ ସେ ଦୁହେଁ ନୃତ୍ୟ କରୁଥିଲେ । ସାରସ ଓ ସାରସୀ ଦୁହେଁ ତାଙ୍କୁ ଲାଗୁଥିଲେ ଏବେ କୋଣାର୍କ ଡାନ୍ସ ଫେଷ୍ଟିଭାଲରେ ସେ ଦେଖିଥିବା ଦୁଇଟି ନୃତ୍ୟାଙ୍ଗନା ପରି ।

ତାଥମ୍-ତା-ଥିଟା-ଥେନୁ-ତାଥମ୍-ତା-ଥିଟା-ଥେନୁ-ତାଥମ୍-ତା-ଥିଟା-ଥେନୁ-ତା... ରୋକଟର ତାଳେ ତାଳେ ସତେ ଯେପରି ସେ ପରିବେଷଣ କରୁଥିଲେ ପଲ୍ଲବୀ ।

ଏହି ଫଟୋଟିର କେତୋଟି କପି ସେ ପଠାଇଥିଲେ ସାରାଙ୍କ ପାଖକୁ ।

ପରେ ସେ ଗବେଷଣାରୁ ଜାଣିଲେ ଯେ ଏ ନୃତ୍ୟ କେବଳ ଶାରୀରିକ ମିଳନ ପରିପ୍ରେକ୍ଷୀରେ ନୁହେଁ । ବେଳେବେଳେ ସାରସମାନେ ଏହି ନୃତ୍ୟ କରନ୍ତି ଏବଂ ନିଜର ମାନସିକ ସନ୍ତାପ ହ୍ରାସ କରନ୍ତି ।

ଆଉ ଦିନେ । ଦୁଇଦଳ ପକ୍ଷୀଙ୍କ ମଧ୍ୟରେ କୌଣସି କାରଣରୁ ଚାଲିଥିଲା ତୁମୁଳ କନ୍ଦଳ, କେଶାକେଶି, ବଳ କଷାକଷି । ଏକ ପାର୍ଶ୍ୱରେ ଦେଶୀୟ ପକ୍ଷୀ ଅନ୍ୟ ପାର୍ଶ୍ୱରେ ବୈଦେଶିକୀ ପକ୍ଷୀ ।

ଡାହୁକ ତା'ର ନଳୀଗୋଡ଼ କଚାଡ଼ି କୁହାଟୁଥିଲା—କୁକ୍-କୁଦ୍-କୁକ୍—କୋଉଠୁ ଆସିଛ, ବୁଡବକଗୁଡ଼ାକ ?

ଶଣ୍ଢାଖାଇ ବକୁଥିଲା—ଚୁର୍-ଚୁର୍-ଚୁର୍ । ତମେମାନେ ସବୁ ଚୋର, ତସ୍କର ।

ମାଛରଙ୍କା ଛିଗୁଲୋଉଥିଲା—ଛିଛି-ଛିଛି-ଛିଛି-ଛିଛି—ଏ ସବୁ ରୋଗୀ ପକ୍ଷୀ ।

ଘଣ୍ଟୁଆଳ ପାଳି ଧରୁଥିଲା—ଛୁକ୍-ଛୁକ୍—ଛୁଅଁନା-ଛୁଅଁନା ତାଙ୍କୁ ।

ଟେଁଟେଇଁୟା ପାଟି କରୁଥିଲା—ହ-ଟିଟି-ହ-ଟିଟି—ଏଠୁ ତମେ ଯାଅ ହଟି, ଯାଅ ହଟି ।

ଅଳ୍ପ ସଂଖ୍ୟକ ଗିରଧାରୀମାନେ ବଡ଼ ପାଟିରେ ଚିଲାଉଥିଲେ—ଭାକ୍-ଭାକ୍-ଭାକ୍—ତମେ କିଏ ଆମକୁ ତଡ଼ିବାକୁ ?

ସଂଖ୍ୟାଗରିଷ୍ଠ ପାଣ୍ଡା, ଗେଣ୍ଡୀମାନେ ଲାଞ୍ଜ ଉପରକୁ ଟେକି, ମୁଣ୍ଡ ଡୁବାଇ ତାଙ୍କ ଗାଳି ବର୍ଷଣକୁ କର୍ଣ୍ଣପାତ କରୁନଥିଲେ ଏକ ସଘୃଣ ଅବଜ୍ଞାରେ ।

କିଚିରିମିଚିରିରେ ଆକାଶ କମ୍ପିଲା । ଚିଲିକାର ଜଳରେ ପକ୍ଷୀଙ୍କ ପର ସବୁ ଭାସିଲା । ନଖ, ଚଞ୍ଚୁର ପ୍ରୟୋଗରେ ଅନେକ ପକ୍ଷୀ ଲହୁଲୁହାଣ ହେଲେ ।

ସେଠିକୁ ଚିଁ ଚିଁ କରି ଉଡ଼ିଆସିଲା କଜଳପାତି । ଅନାହୂତ ଭାବେ ପ୍ରବେଶ କରି ଭଦ୍ରଲୋକି କରିବା ତା'ର ପ୍ରକୃତି ।

ନଳବଣର ମଧ୍ୟଭାଗରେ ଏକ କାଳ୍ପନିକ ରେଖାଟାଣି ସେ କହୁଥିଲା—''ଏପଟେ ରହିବେ ଦେଶୀ ପକ୍ଷୀ, ସେପଟେ ବିଦେଶୀ ।''

କେହି ତା' କଥାକୁ କର୍ଣ୍ଣପାତ କଲେନି । ''ରଖ ତୋ ଭଦ୍ରଲୋକି'', ''ଭାକ୍-ଭାକ୍-ଭାକ୍'' କହି ତାକୁ କିଛି ପକ୍ଷୀ ଘଉଡ଼ାଇ ଦେଲେ ।

ଯୁଦ୍ଧସ୍ଥଳକୁ ଡଗ ଡଗ କରି ଦ୍ରୁତଗତିରେ ଆସିଲା ସାରସ । ଡାକ ଦେଲା—କର-ର-ର-ଓ-ଓ—କାହିଁକି କଳି କରୁଛ ? ପଛେ ପଛେ ଏରାପକ୍ଷୀଙ୍କ ଫଉଜ । ପକ୍ଷୀମାନେ ଦୁଇଭାଗ ହୋଇ ବସିଗଲେ । କିଚିରିମିଚିରି ସ୍ତିମିତ ହୋଇଗଲା । କ୍ରିଷ୍ଟେନଙ୍କୁ ଲାଗିଲା କଳିତକରାଳର ମୀମାଂସା ପାଇଁ ବୋଧହୁଏ ସାରସ ପରି ବ୍ୟକ୍ତିତ୍ୱ ଜରୁରୀ ।

ଆଉ ଥରେ ସେ ନଳବଣରୁ କଟେଜକୁ ଫେରୁଥିଲେ । ପାଣି ଭିତରେ ପ୍ରସ୍ତ ପ୍ରସ୍ତ ଶୈବାଳ ଭାସୁଥିଲା । କେତେକ ଶୈବାଳରେ ଫୁଲ ଫୁଟିଥିଲା । ବୋଧହୁଏ ସେ ଫୁଲ ଖାଇବା ପାଇଁ କିମ୍ବା ଶୈବାଳ ମଧ୍ୟରେ ଲୁକ୍କାୟିତ କୃମିମାନଙ୍କୁ ଖାଇବା ପାଇଁ ସେଠି ଧାଡ଼ି ଧାଡ଼ି ହୋଇ ହଂସରାଜି ପହଁରୁଥିଲେ । ଦିଶୁଥିଲେ ଏକ ଭାସମାନ ରେଲୱେ ୟାର୍ଡରେ ଛିଡ଼ା ହୋଇଥିବା ଧାଡ଼ି ଧାଡ଼ି ମାଲଗାଡ଼ି ପରି ।

କ୍ରିଷ୍ଟେନଙ୍କ ଡଙ୍ଗାକୁ ଦେଖି ପାଣିରେ ଗୋଡ଼ ପିଟି ଡେଣା ଛାଟି ଛାଟି ପକ୍ଷୀମାନେ ଉଡ଼ିଗଲେ । ଏରାପକ୍ଷୀର ଦଳ ଉଡ଼ିଗଲାବେଳେ ଦିଶୁଥିଲା ଦିଗକନ୍ୟାର ଗୋଲାପୀ ଶାଢ଼ିର ପଣତ ଉଡ଼ିଗଲା ପରି ।

ଗୋଟିଏ ନୀଳପକ୍ଷ ବତକ ଡେଣା ପିଟି ଉଡ଼ିବାକୁ ଚେଷ୍ଟା କରି ପଡ଼ିଯାଉଥିଲା । ଆତ୍ମରକ୍ଷାର ଶେଷ ଚେଷ୍ଟା କରି ସେ ପାଣି ଭିତରେ ବୁଡ଼ ଦେଲା । କିନ୍ତୁ ଡଙ୍ଗାରେ ବାଜି ପୁଣି ଭାସିଉଠିଲା ।

କ୍ରିଷ୍ଟେନ ତାଙ୍କୁ ପାଣିରୁ ଉଠାଇଲେ । ପୁଣି ଫେରିଲେ ନଳବଣକୁ । ଆହତ ଏବଂ ରୋଗଗ୍ରସ୍ତ ପକ୍ଷୀମାନଙ୍କ ପାଇଁ ତାରଜାଲି ଘେରାହୋଇ ଟାୱାର ପାଖରେ ଏକ ଆଶ୍ରୟସ୍ଥଳ ନିର୍ମିତ ହୋଇଛି । କ୍ରିଷ୍ଟେନ ସେଠି ପକ୍ଷୀଟିକୁ ନେଇ ଛାଡ଼ିଲେ । ହତଭାଗ୍ୟ ବିହଙ୍ଗମାନଙ୍କ ଉପଚାର କରିବା ତାଙ୍କର ଏକ ନିତିଦିନିଆ କାର୍ଯ୍ୟ ହୋଇଗଲା ।

ମଝିରେ ମଝିରେ ରେଞ୍ଜ ଅଫିସର ଅରୁଣ ଗୋଚ୍ଛାୟତ ଜଗୁଆଳିଙ୍କ କାମ ତଦାରଖ ପାଇଁ ଆସନ୍ତି । ଥରେ ପଚାରିଲେ–''ଏ ଗୋରା ସାହେବ ନିତିଦିନ ଆସୁଛି, କ'ଣ କରୁଛି ?''

–''ପ୍ରତିଦିନ ଏଠି ବସି ଫଟ ନେଉଛନ୍ତି । ଆଉ କ'ଣ ଖାତାରେ ଟିପୁଛନ୍ତି– ଜଗୁଆଳି ଉତ୍ତର ଦେଲା ।''

–''ପକ୍ଷୀମାଂସ ଖାଉନି ତ ?''

–''ନାଇଁ ନାଇଁ''–ହସ୍ତମସ୍ତକ ଏକାଧାରରେ ହଲାଇ କହିଲା ସେ ।

''ପାଉଁରୁଟି ପୁଡ଼ିଆଟିଏ ଆଉ ପାଣି ବୋତଲଟିଏ ଧରି ଆସୁଛନ୍ତି । ଗଲାବେଳେ ଝରି ପୁଡ଼ିଆଟିକୁ ପକେଟରେ ପୂରାଇ ଫେରୁଛନ୍ତି । ବଦ୍ଧ ପାଗଳଟିଏ ।''

–''ବହୁ ବର୍ଷ ପୂର୍ବେ ଝୁଲାମୁଣିଟିଏ ଧରି ସଲିମ ଅଲୀ ବୋଲି ବୁଢ଼ାଲୋକ ଜଣେ ଏଠିକି ଆସିଥିଲେ । ଆଉ କୌଣସି ଲୋକଙ୍କୁ ମୁଁ ଏଭଳି ମନମୁନ ଚଇତନ ଲଗାଇ ବସିବାର ଦେଖିନି ।''

ଅରୁଣ ଭାବୁଥିଲେ, ଏ ବିଦେଶୀମାନଙ୍କ ସାଧନାକୁ ସାଧୁବାଦ ଦେବା କଥା । ଏହିଭଳି ପ୍ରତିବଦ୍ଧତା ଆମ ରାଜ୍ୟର ଲୋକଙ୍କର ଥାଆନ୍ତା କି ?

ଚାହୁଁ ଚାହୁଁ ତିନିମାସ ବିତିଗଲା । ଶୀତ ଯାଇ ବସନ୍ତ ଆସିଲା । ବସନ୍ତ ଆସିଲେ କୁଆଡ଼େ ସ୍ଥାବର ଜଙ୍ଗମ ହସେ । କିନ୍ତୁ ଚିଲିକାର ମୁହଁ ଶୁଖିଯାଏ । ସେ ନିଜକୁ ଅଭାଗିନୀ ମନେକରେ । କାରଣ ତାକୁ ଆଉ ପିନ୍ଧିବାକୁ ମିଳିବନି ମରାଳର ମାଳ । ଆଉ ତା'ର ଆକାଶରେ ଫରଫର ହୋଇ ଉଠିବନି ଏରାପକ୍ଷୀଙ୍କ ରଙ୍ଗିନ ରିବନ । ଧୀରେ ଧୀରେ ନିମ୍ନଗାମୀ ହେବ ତା'ର ଜଳର ପତନ । ପକ୍ଷୀମାନଙ୍କର ବାହୁଡ଼ା ଯାତ୍ରା ହେବ ନିଜ ନିଜର ଜନ୍ମଭୂମିକୁ ।

ଚିଲିକାରେ ଶରତର ରାଜତ୍ୱ ହିଁ ତା'ପାଇଁ ସୁବର୍ଣ୍ଣଯୁଗ ।

ସାରସ ପରିବାର ମଧ୍ୟ ପ୍ରତ୍ୟାବର୍ତ୍ତନ ପାଇଁ ପ୍ରସ୍ତୁତ ହେଲେ ।

ସାରସର ମନରେ ଦ୍ୱନ୍ଦ୍ୱ । ସାଇବେରିଆ ଏବେ ଆଉ ଅପନ୍ତରା ହୋଇନଥିବ । ସେଠି ବରଫ ତରଳିବଣି । ମଧୁର ଜଳରେ ଭରି ଯିବଣି ବୈକାଲର ହ୍ରଦ । ଭାଙ୍ଗିଯିବଣି ଲେନା ନଦୀର ପ୍ରଲମ୍ବିତ ନିଦ । ସାଇବେରିଆର ମରୁପ୍ରାନ୍ତର ପୁଣି ଭରିଯିବଣି ହରିତ ଓ ଲୋହିତ ଗୁଳ୍ମ ଓ ପତ୍ରରେ । ସେଠିକୁ ଫେରି ଆସିବେଣି ଦେଶାନ୍ତରୀ ହୋଇଥିବା ତା'ର ଜ୍ଞାତି ଓ କୁଟୁମ୍ବ । ବୈକାଲ ହ୍ରଦରେ କିଛିଦିନ ଅନ୍ତେ ଅନୁଷ୍ଠିତ ହେବ ବାସନ୍ତିକ ମେଳା । ସେଇଠି ତରୁଣ ସାରସ ପକ୍ଷୀମାନେ ତାଙ୍କର ଜୀବନ ସାଥୀଙ୍କୁ ବାଛିବେ ।

ସୃଷ୍ଟି ଅଗ୍ରସର ହେବ ।

ସ୍ରଷ୍ଟାଙ୍କ ଆଦେଶ ପାଳିତ ହେବ ।

ସାରସୀ ବୋଧେ ଯିବା ପାଇଁ ଆଗ୍ରହୀ ନ ଥିଲା ।

ସାରସ ଏକ ଦାର୍ଶନିକ ସୁଲଭ ଢଙ୍ଗରେ ପ୍ରବୋଧନା ଦେଉଥିଲା–''ଗୋଟିଏ ଜାଗାରେ ପଡ଼ିରହିବା ଆମର ଅବଧାରିତ ଭାଗ୍ୟ ନୁହେଁ । ଗୋଟିଏ ଜାଗାରେ ପଡ଼ିରହିଲେ ଆମେ ଓଟପକ୍ଷୀ ଓ ପେଙ୍ଗୁଇନ୍‌ମାନଙ୍କ ପରି ଉଡ଼ିବା ଭୁଲିଯିବାନି କି ? ଉଡ଼ାଣରେ ହିଁ ଆମର ଉତ୍ତରଣ । ପ୍ରବ୍ରଜ୍ୟାରେ ହିଁ ଆମର ପରିତ୍ରାଣ ।''

କ୍ରିଷ୍ଟେନଙ୍କ ପାଖଦେଇ ସତେଯେପରି ସେମାନେ 'ଅଲବିଦା' କହି ଉପରକୁ ଉଠିଲେ । କ୍ରିଷ୍ଟେନଙ୍କ ମନରେ ହର୍ଷ ନ ଥିଲା । କିନ୍ତୁ ତାଙ୍କର କିଛି କରିବାର ନ ଥିଲା ।

କ୍ରିଷ୍ଟେନ ହାତ ହଲାଇ ତାଙ୍କ ଭାଷାରେ କହୁଥିଲେ–''ବାଏ, ବାଏ, ଦସ୍ବ୍ୟ ଦାନିଆ ।''

ତା'ପରେ ଆରମ୍ଭ ହୋଇଥିଲା ସାରସ ପରିବାରର ଉତ୍ତରାୟଣ ।

ପାଦକୁ ପଛକୁ ଛାଟି, ବେକକୁ ଆଗକୁ ଲମ୍ବାଇ ଆକାଶ ଓ ଧରିତ୍ରୀ ସହ ସମାନ୍ତର ହେଲା ପରେ ସାରସ ପତ୍ନୀ ଓ ପୁତ୍ରକୁ କହିଲା–''ଆଉ ଥରେ ଦେଖିନିଅ ଏ ସ୍ଥାନର ବିହଙ୍ଗମ ଦୃଶ୍ୟ । ଦକ୍ଷିଣରେ ହେନ୍ତାଳ ଓ ଝାଉଁବଣରେ ବେଷ୍ଟିତ ସମୁଦ୍ର । ଉତ୍ତରରେ ତାଳ, ତମାଳ, ନାରିକେଳ ବୃକ୍ଷ ସମନ୍ୱିତ ସବୁଜ ଶସ୍ୟକ୍ଷେତ୍ର । ବାମ ପାର୍ଶ୍ୱରେ ଟିକିଏ ଦୂରରେ ହେଇ ଯେ ଦିଶୁଛି ଏକ ନଭଶ୍ଚୁମ୍ବୀ ଦେବାଳୟ । ତା'ର ନୀଳଚକ୍ର ଓ ପତିତପାବନ ନେତକୁ ଭଲକରି ଲକ୍ଷ୍ୟ କର । ଆଗାମୀ ଶୀତଋତୁରେ ଆମେ ପୁଣି ଏଠିକୁ ଆସିବା । ଚାରିମାସ ବିତାଇବା । ତେଣୁ ଭଲଭାବେ ଏ ସ୍ମୃତି ଚିହ୍ନଗୁଡ଼ିକୁ ମନେରଖ ।

ତା'ପରେ ସେମାନେ ଆକାଶର କଳାପଟାରେ ଏକ ଯେହେତୁ ଚିହ୍ନର ତିନୋଟି ବିନ୍ଦୁ ଆଙ୍କି ମିଳାଇ ଯାଇଥିଲେ ।

କ୍ରିଷ୍ଟେନ ସେ ପର୍ଯ୍ୟନ୍ତ ତାଙ୍କୁ ଏକଲୟରେ ଚାହିଁ ରହିଥିଲେ ।

ଧୀରେ ଧୀରେ ସେମାନଙ୍କର ଉଡାଣ ହେଲା କ୍ଷିପ୍ରରୁ କ୍ଷିପ୍ରତର । ଏକ ଅଫୁରନ୍ତ ଶକ୍ତି ଖେଳିଗଲା ତାଙ୍କ ଡେଣାରେ ପରରେ ।

ତରାଇ ଘଞ୍ଚ ଅରଣ୍ୟରେ ସେମାନେ ରାତ୍ରି ଯାପନ କଲେ । ପରଦିନ ଲଘିଲେ

ଦୁର୍ଦ୍ଧର୍ଷ ହିମାଳୟ ପର୍ବତ ଶୃଙ୍ଖଳା । ପାଇନଗଛର ଶୀର୍ଷରେ ମେଘମାନେ ବେକ ଘଷୁଥିଲେ । ହିମାଳୟର ଶଂଖ ଶୁଭ୍ର ଶୃଙ୍ଗଗୁଡ଼ିକ ଝଲସୁଥିଲେ କଅଁଳିଆ ସୂର୍ଯ୍ୟ କିରଣରେ ।

ସେ ସୌନ୍ଦର୍ଯ୍ୟ ଉପଭୋଗ କରିବା ପାଇଁ ତାଙ୍କ ପାଖରେ ଅବସର ନ ଥିଲା । ଘରମୁହାଁ ହେଲେ ଭୋକ ଶୋଷ ବି ରହେନା । ପଥପ୍ରାନ୍ତର ଦୃଶ୍ୟ ଦେଖିବାକୁ ସମୟ କାହିଁ ?

ଚାହୁଁ ଚାହୁଁ ଦିନ କେତେଟାରେ ସେମାନେ ପାରହେଲେ ପାମିର ମାଳଭୂମି, ପୃଥିବୀର ଛାତ ତିବ୍ବତ ଏବଂ ଗୋବି ମରୁସ୍ଥଳ ।

ତାଙ୍କର ମନଶ୍ଚକ୍ଷୁରେ ଜଳଜଳ ହୋଇ ଦିଶୁଥିଲା ପ୍ରିୟ ସାଇବେରିଆ । ବସନ୍ତ ଆସିଥିବ । ବରଫ ଚାଦର ତଳୁ ଉଙ୍କିମାରୁଥିବ ଜାତି ଜାତି ଗୁଳ୍ମ । ଟାଇଗାର ବାର୍ଚ୍ଚ ଓ ପପଲାର ବୃକ୍ଷରେ ଖୁନ୍ଦି ହୋଇଥିବେ ଚମ୍ପାଟିଆ ପତ୍ର । ରଙ୍ଗବେରଙ୍ଗ ଫୁଲରୁ ଫୁଲକୁ ଘୂରି ବୁଲୁଥିବେ ମଦମତ୍ତ ସବୁଜ ପତଙ୍ଗ ।

ଲେନା ନଦୀ କୂଳରେ ତାଙ୍କର ଯାତ୍ରା ଶେଷ ହେଲା । ସେତେବେଳେ ବିହଙ୍ଗମାନଙ୍କ କଳକାକଳି ଓ ହସକାନ୍ଦରେ ଫାଟି ଉଠୁଥିଲା ସାଇବେରିଆର ଆକାଶ ।

(୪)

ଚିଲିକାର ଚାରୁ ଚିତ୍ରପଟରେ ମୁଗ୍ଧ ହୋଇ ହେଉ ବା ନିଜର ଗବେଷଣା କାର୍ଯ୍ୟକୁ ତ୍ୱରାନ୍ୱିତ କରିବାକୁ ହେଉ, କ୍ରିଷ୍ଟେନ୍ ସେ ବର୍ଷ ବସନ୍ତ ଋତୁରେ କାନାଡ଼ା ଫେରିଲେ ନାହିଁ । ସେ ଚିଲିକାର ମନଲୋଭା ଶରଦୋତ୍ସବ ଦେଖିଛନ୍ତି । ଗ୍ରୀଷ୍ମ ଓ ବର୍ଷାରେ ତା'ର ଭୀମକାନ୍ତ ରୂପକୁ ଦେଖିବେ । ଏହି ଆଶା ନେଇ ରହିଗଲେ ।

ସେ ଥିଲେ କର୍ମ-ପାଗଳ ବ୍ୟକ୍ତି । କୌଣସି କାମକୁ ଅସମ୍ପୂର୍ଣ୍ଣ କରି ପକାଇବା ତାଙ୍କ ଜାତକରେ ନ ଥିଲା । ତେଣୁ ସେ ପତ୍ନୀଙ୍କୁ ଚିଠି ଲେଖିଲେ :

''ଏଠି ମୋର କାମ ସରିନି । ତେଣୁ କାନାଡ଼ା ଫେରିବା ସମ୍ଭବ ହୋଇ ପାରୁନି । ଆଶା, ଭଲରେ ଥିବ । ଲାରା ଓ ପିଟରକୁ ସ୍ନେହ ଦେବ । ଏଥର ଶରତ ଆସିଲେ ତମେ ଏଠିକୁ ଆସ ସାରା । ଏ ସ୍ଥାନର ସୌନ୍ଦର୍ଯ୍ୟ ଚିଠିଦ୍ୱାରା ବର୍ଣ୍ଣନା କରିବା ଅସମ୍ଭବ । ତମେ ଆସିବ ସାରା । ଆଇ ମିସ୍ ୟୁ ଠୁ ମଚ୍ ।''

ଗବେଷଣାର ପ୍ରବନ୍ଧ ଲେଖିଲାବେଳେ ଦିସ୍ତା ଦିସ୍ତା କାଗଜ ସାରି ଦିଅନ୍ତି ସେ । ଶତାଧିକ ପୃଷ୍ଠାର ବହି ଲେଖି ଦିଅନ୍ତି ସେ । କିନ୍ତୁ ଚିଠି ଲେଖିଲା ବେଳେ ସତେ ଯେପରି ପ୍ରେସିଜ୍ ଟିଏ ଲେଖନ୍ତି । ସାରା ବି ତାଙ୍କର କାମଖୋର ସ୍ୱାମୀଙ୍କଠୁ ଆଉ ବେଶୀ କିଛି ଆଶା କରନ୍ତିନି । ବିବାହର ପ୍ରଥମ କେତେବର୍ଷ ସେ ଆଗ୍ରହର ସହ ଚିଠି ପାଇଁ ଅପେକ୍ଷା କରୁଥିଲେ । ଭାବୁଥିଲେ, ଖୁବ୍ ଦୀର୍ଘ ପତ୍ରଟିଏ ହୁଅନ୍ତା କି, ଯାହାକୁ ସେ ଘଣ୍ଟା ଘଣ୍ଟା ଧରି ପଢ଼ିଲେ ମଧ୍ୟ ସରନ୍ତାନି । କିନ୍ତୁ ତାଙ୍କ ସ୍ୱାମୀ ଯେ

ଜଣେ ଅସଂଶୋଧନୀୟ ମେସିନ । ଏସବୁ ଦିଗରେ ତାଙ୍କଠୁ ବେଶୀ କିଛି ପ୍ରତ୍ୟାଶା ନ ଥିଲା ତାଙ୍କର ।

ଇତି ମଧ୍ୟରେ ଚିଲିକାର ଉତ୍ତର ନାସି ଓ ଦକ୍ଷିଣ ନାସି ପଟୁ ସେ ଭିତରକୁ ଯାଇଛନ୍ତି । ଏକ ଏକ ସପ୍ତାହ ସାତପଡ଼ା ଓ ରମ୍ଭାରେ କ୍ୟାମ୍ପ କରିଛନ୍ତି । ଚିଲିକାର ବର୍ତ୍ତମାନର ସମସ୍ୟା ସମ୍ପର୍କରେ ତାଙ୍କର ସମ୍ୟକ ଜ୍ଞାନ ହେଲାଣି ।

ସାତପଡ଼ାରୁ ନଳବଣକୁ ଗଲାବେଳେ ଗାଇଡ ଇଙ୍ଗିତ କଲା—''ଏହି ଟିକିଏ ଦୂରରେ ଅରଖକୁଦା ମୁହାଣ ।''

କ୍ରିଷ୍ଟେନଙ୍କ ଦୃଷ୍ଟି ଆକର୍ଷିତ ହୋଇଥିଲା ଟିକିଏ ଦୂରରେ ଏକ ଟାପୁ ଉପରେ ଥିବା ଏକ ବୃହଦ୍‌କାୟ ଯନ୍ତ୍ର ଆଡ଼େ ।

—''ସେଇଟା କ'ଣ ?''

—''ଓଃ..., ସେଇଟା ପଟୁମାଟି ଖୋଳିବାକୁ ଆସିଥିବା ଡ୍ରେଜର ।''

ବାଗୁଲା ବଣ ଭିତରେ ଡ୍ରେଜରଟି ଦିଶୁଥିଲା ଏକ ପ୍ରାଗୈତିହାସିକ ତୃଣଭୋଜୀ ଡାଏନୋସାର ପରି ।

—''ସେଇଟା ଏଠି ଅଥର୍ବ ଭଳି ପଡ଼ିଛି କାହିଁକି ?''

—''ସ୍ପେୟାର ପାର୍ଟସ ଅଭାବରୁ ତା'ର ଅଖଚକ ବନ୍ଦ ହୋଇଯାଇଛି''—କହି ହସିଲା ସେ ।

ରାସ୍ତାରେ ସେ ଦେଖିବାକୁ ପାଇଲେ ଯେ ପାଣି ଭିତରେ ଗୋଟିଏ ଇଞ୍ଚ ପରିମିତ ଜାଗା ଆଉ ମାଛ-ଚାଷୀ ମାନେ ଛାଡ଼ି ନାହାନ୍ତି । ଚାରିଆଡ଼େ ମାଛମରା ନାଇଲନ ଜାଲ ଘେରି ବୁଲିଛି । ବଡ଼ ସନ୍ତର୍ପଣରେ ଜାଲ ଭିତରେ ଭିତରେ ସେ ଡଙ୍ଗା ନେଇ ଯାଇଥିଲେ ।

ପକ୍ଷୀମାନେ କେବଳ ନଳବଣରେ ସୀମିତ ହୋଇ ରହିଥିବାର ହେତୁ ସେ ସ୍ୱଚକ୍ଷୁରେ ଦେଖିଲେ । ସେ ଶୁଣିଥିଲେ, ଏକଦା କୁଆଡ଼େ ଚିଲିକାର ଚାରିଆଡ଼େ ସେମାନେ ବିହରଣ କରୁଥିଲେ ।

ଆଉଥରେ ଟ୍ରେନଯାତ୍ରା ସମୟରେ ସେ ଦୂରରୁ ଦେଖିଥିଲେ ଚିଲିକାକୁ । ଭୁଷଣ୍ଡପୁର, କାଲୁପଡ଼ା ଘାଟ ପ୍ରଭୃତି ଷ୍ଟେସନମାନଙ୍କରେ କୁଆଡ଼େ ପକ୍ଷୀ ଧରାହୋଇ ବିକ୍ରି ହୁଏ ବୋଲି ସେ ଶୁଣିଥିଲେ । ଦେଖିଲେ, ବାଲୁଗାଁ ଠାରୁ ରମ୍ଭା ଯାଏ ସବୁଆଡ଼େ ବାଉଁଶର ଖୁଣ୍ଟି ପୋତା ଯାଇଛି ଏବଂ ତାରଜାଲିରେ ବାଡ଼ ସୃଷ୍ଟି କରାଯାଇଛି ।

ମରାଳମାନଙ୍କର ଚିହ୍ନବର୍ଣ୍ଣ ନ ଥିଲା କେଉଁଠି । ବାଉଁଶ ଖୁଣ୍ଟି ଉପରେ କଦବା କ୍ୱଚିତ୍ ପାଣିକୁଆଟିଏ ବା କଜଳପାତିଟିଏ ବସିଥିଲା ।

ଚିଲିକା ତାଙ୍କୁ ଲାଗିଲା ଏକ ଶରବିଦ୍ଧା ଅଭିଶପ୍ତା ଅପ୍‌ସରା ପରି ।

ସେ ଚିନ୍ତାଗ୍ରସ୍ତ ହେଉଥିଲେ ଯେ ଏହି ସୁନ୍ଦର ଓ ବିଶାଳକାୟ ହ୍ରଦ ଏବେ ଧୀରେ ଧୀରେ କ୍ଷୟ ହୋଇଯାଉଛି । ଏକଦା ଏହାର ଆୟତନ ବର୍ତ୍ତମାନର ଆକାରର ଥିଲା ଦୁଇ ଗୁଣ । ଧୀରେ ଧୀରେ ଜଳ ପତନ ଆଶଙ୍କାତୀତ ଭାବେ ହ୍ରାସ ପାଇଛି । ଦୟା, ଭାର୍ଗବୀ, ଲୁଣା ନଦୀର ଅବବାହିକାରେ ଜଙ୍ଗଲ ଧ୍ୱଂସ ହେଉଥିବା ଯୋଗୁଁ ମୃତ୍ତିକା କ୍ଷୟ ହୋଇ ଚିଲିକା ପୋତିହୋଇ ପଡୁଛି । ସମୁଦ୍ର ସହ ସଂଗମସ୍ଥଳ ଅରଖକୁଦାରେ ମୁହାଁଣର ଆକାର ହ୍ରାସ ଘଟିଥିବା ଯୋଗୁଁ ଯଥେଷ୍ଟ ଜଳ ପ୍ରବେଶ କରିପାରୁ ନାହିଁ । ପକ୍ଷୀ ଶିକାର ଅବାଧରେ ଚାଲିଛି ।

ସେ ଚିଲିକାର ପରିବେଶର ସୁରକ୍ଷା ପାଇଁ ଅଣ୍ଟା ଭିଡ଼ିଲେ । ମୁଖ୍ୟମନ୍ତ୍ରୀ ଓ ବନବିଭାଗ ମନ୍ତ୍ରୀଙ୍କୁ ସାକ୍ଷାତ କରି ତାଙ୍କର ପରାମର୍ଶ ଦେବାକୁ ସ୍ଥିର କଲେ । ଆମେରିକା ଓ କାନାଡ଼ାରୁ ଅର୍ଥ ସାହାଯ୍ୟ ପାଇଁ ଯୋଗାଯୋଗ କରିବାକୁ ନିଶ୍ଚିତ କଲେ ।

ବମ୍ବେର ନାଚୁରାଲ ହିଷ୍ଟ୍ରି ସୋସାଇଟି ଯାଇ ସେଠିକାର କର୍ମକର୍ତ୍ତାଙ୍କ ପରାମର୍ଶ ନେଲେ ।

ପ୍ରଖ୍ୟାତ ପକ୍ଷୀ-ବିଶାରଦ ଡଃ ସଲିମ୍ ଅଲ୍ଲୀଙ୍କ ବୁକ୍ ଅଫ୍ ଇଣ୍ଡିଆନ୍ ବାର୍ଡସ୍ ସେ ଆଗରୁ ପଢ଼ିଥିଲେ । ନାଚୁରାଲ ହିଷ୍ଟ୍ରି ସୋସାଇଟିରେ ତାଙ୍କର ଅନ୍ୟ ପ୍ରବନ୍ଧ ଓ ବିବରଣୀଗୁଡ଼ିକ ଅବଲୋକନ କରିବାକୁ ସୁଯୋଗ ପାଇଲେ । ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଥିଲା ଯେ ଏହି କିମ୍ବଦନ୍ତୀ ପୁରୁଷ ଭାରତୀୟ ଉପମହଦ୍ୱୀପର କୋଣେ କୋଣେ ବୁଲିଥିଲେ ବି ଚିଲିକାର ଚଢ଼େଇଙ୍କ ସମ୍ପର୍କରେ ତାଙ୍କର କୌଣସି ଲେଖା ନ ଥିଲା । କେବଳ ସେ ଏକାକୀ ନୁହନ୍ତି, ଅନ୍ୟ ସବୁ ବିଦେଶୀ ପକ୍ଷୀ-ବିଶାରଦ ମଧ୍ୟ ଚିଲିକାକୁ ଉପେକ୍ଷା କରିଥିଲେ । ସେଥିପାଇଁ ସେ ସ୍ୱରୂପା ଚିଲିକାକୁ ବିଶ୍ୱ ଦରବାରରେ ପରିଚିତ କରାଇବା ପାଇଁ ଦୃଢ଼ ସଂକଳ୍ପ ନେଲେ ।

ଏହି କର୍ମ ବ୍ୟସ୍ତତା ମଧ୍ୟରେ ବସନ୍ତ, ଗ୍ରୀଷ୍ମ, ବର୍ଷା ଗୋଟିକ ପରେ ଗୋଟିଏ ଆସି ଫେରିଯାଇଥିଲେ ।

ଦିନେ କାନାଡ଼ାରୁ ଫୋନ୍ ଆସିଲା । ସାରା ଫୋନ କରିଥିଲେ । ସପ୍ତାହେ ପରେ ଦିଲ୍ଲୀବାଟ ଦେଇ ସେ ପିଲାଙ୍କ ସହ ଓଡ଼ିଶାରେ ପହଞ୍ଚୁଛନ୍ତି ।

—"କେତେଦିନ ରହିବ ?"

ଏତିକିରେ ଫୋନ ଲାଇନ କଟିଗଲା । ନିଜଆଡ଼ୁ ଚେଷ୍ଟା କରି ଆଉ ସେ ଫୋନ୍‌ରେ ସମ୍ପର୍କ କରି ପାରିଲେନି ।

ତା'ପର ସାତଦିନ ସେ ଯେଭଳି ଉଲ୍ଲସିତ ହୋଇଛନ୍ତି, ଜୀବନରେ ଆଉ ବୋଧେ କେବେ ଏପରି ଉଲ୍ଲସିତ ହୋଇନାହାନ୍ତି । ଏ ଖୁସିରେ ତାଙ୍କର ନିତ୍ୟନୈମିତ୍ତିକ ରୁଟିନରେ ବ୍ୟତିକ୍ରମ ଆସିଛି । ଏପରିକି ତାଙ୍କର ଫ୍ରେଞ୍ଚକଟ ଦାଢ଼ିକୁ ବିନ୍ୟସ୍ତ କରିବା ପାଇଁ ସେ ସମୟ ପାଇନାହାନ୍ତି ।

ଭୁବନେଶ୍ୱର ଏୟାରପୋର୍ଟରୁ ପତ୍ନୀ ଓ ପୁତ୍ର କନ୍ୟାଙ୍କୁ ସ୍ୱାଗତ କରି ଆଣି ପାନ୍ଥନିବାସରେ ପହଞ୍ଚିବା ବେଳକୁ ସନ୍ଧ୍ୟା ହୋଇ ଯାଇଥିଲା । ଜେଟ୍ ଲ୍ୟାଗ ଯୋଗୁଁ ସେମାନେ ସେଦିନ ପୂରା ଶୋଇଲେ । ସାରାଙ୍କ ସହ ବାର୍ତ୍ତାଳାପ କରିବାର ସୁଯୋଗ ମଧ୍ୟ ମିଳିଲାନି ।

ପରଦିନ ବ୍ରେକ୍‌ଫାଷ୍ଟ ଖାଇ ସାଥିରେ ଲଞ୍ଚ ପ୍ୟାକେଟ ଧରି ସେମାନେ ବାହାରିଥିଲେ ଚିଲିକା ଦର୍ଶନରେ । ଚିଲିକାକୁ ଦେଖାଇବା ପାଇଁ କ୍ରିଷ୍ଟେନଙ୍କ ଗୋଡ଼ହାତ ଥୟ ଧରୁନଥିଲା । ସତେ ଯେପରି ଏହି ଖୁସି ଟିକକ ବାଣ୍ଟିବା ପାଇଁ ସେ ସାତଦିନ ହେଲା ଶୋଇପାରୁନଥିଲେ ।

ଚିଲିକା ସମ୍ପର୍କରେ ତନ୍ମୟ ହୋଇ ଗପି ଚାଲିଥିଲେ କ୍ରିଷ୍ଟେନ । ଏହି ବିଶାଳକାୟ ଦୀର୍ଘିକାର ବ୍ୟାପ୍ତି, ଏହାର ଅପ୍ରଦୂଷିତ ଜଳରାଶି, ଏହାର ବହୁବର୍ଣ୍ଣୀ ପକ୍ଷୀ-ଜଗତ ସମ୍ପର୍କରେ ବଖାଣିଲାବେଳେ ସେ ଶତମୁଖ ହୋଇଉଠୁଥିଲେ ।

ମୋଟରବୋଟ୍‌ଟି ଢେଉ କାଟି କାଟି ଆଗକୁ ଆଗକୁ ଚାଲିଥିଲା । ଜଳକଣା ଛିଟିକି ପଡ଼ିବାରୁ ପିଲାଦୁଇଟି ଉଲ୍ଲସିତ ହୋଇଉଠୁଥିଲେ । ସାରା ନିରବ ଥିଲେ ।

ସାରା । ସେ ଅସାମାନ୍ୟା ସୁନ୍ଦରୀ ନ ଥିଲେ । କ୍ଲାସିକାଲ ବିଉଟି ଏବଂ ଟମ୍ ବୟର ମଧୁର ମିଶ୍ରଣ ହେଲେ ଯେଭଳି ମାଧୁର୍ଯ୍ୟ ସୃଷ୍ଟିହୁଏ, ତା'ର ଅଧିକାରିଣୀ ଥିଲେ ସେ । ପ୍ରଥମ ଦେଖାରେ ନିଜର କଥା କହିବା ଠାଣିରେ ଅନ୍ୟମାନଙ୍କୁ ଟାଣିନେବା ଭଳି ବ୍ୟକ୍ତିତ୍ୱ ଥିଲା ତାଙ୍କର । ପାଞ୍ଚ ମିନିଟରୁ ଅଧିକ ପାଟି ବନ୍ଦକରି ବସିବାର କେହି

ଦେଖିନାହାନ୍ତି ତାଙ୍କୁ । କିନ୍ତୁ ସେଇ ବାଙ୍ମୟୀ, ଦୁଃସାହସିକ ଅଭିରୁଚି ଧାରିଣୀ ନାରୀ ଏବେ ନିରବ ଥିଲେ । କ୍ରିଷ୍ଟେନଙ୍କୁ ଆଶ୍ଚର୍ଯ୍ୟ ଲାଗିବା ସ୍ୱାଭାବିକ ।

ନଳବଣ ପାଖେଇ ଆସିଲା । ବାଇନାକୁଲାରଟି ପତ୍ନୀଙ୍କୁ ଦେଇ କ୍ରିଷ୍ଟେନ କହିଲେ–"ଏଇ ଦେଖ, ମୋର ପ୍ରିୟପକ୍ଷୀ । ଏଇଟି ଚିଲିକାର ନବାଗତ ଅତିଥି । ସାଇବେରିଆନ କ୍ରେନ୍–ଏକ ବିରଳ ଜାତୀୟ ବିହଙ୍ଗ । ଏହି କିଛିବର୍ଷ ହେଲା ଏହି ସାରସ ଦମ୍ପତି ଆସି ଚିଲିକାର ଗୌରବ ବୃଦ୍ଧି କରିଛନ୍ତି ।"

ସାରା ତଥାପି ନିରୁତ୍ତର ଥିଲେ । ତେଣୁ ସେ ପଚାରିଲେ–"ଏ ପକ୍ଷୀଟି ମୋର ପ୍ରିୟ ପକ୍ଷୀ କାହିଁକି ବୋଲି ପଚାରିଲ ନାହିଁ ଯେ ?"

ସାରା ଅନ୍ୟମନସ୍କା ହୋଇ ପଚାରିଲେ–"କାହିଁକି ?"

–"ଏହି ସାରସ ଦମ୍ପତି ଜୀବନ ସାରା ଏକତ୍ର ସାଥୀ ହୋଇ ରହନ୍ତି । ସତେ ଯେପିର ଏକ ପତି-ଏକ ପତ୍ନୀ ବ୍ରତ ପାଳନ ପାଇଁ ଶପଥ ନେଇଛନ୍ତି ।"

–"... ଶୁଣୁଛ ?"

–"ହୁଁ ।"

–"ସବୁଠୁ ଆଶ୍ଚର୍ଯ୍ୟର କଥା ଯେ, ଗୋଟିଏ ପକ୍ଷୀର ମୃତ୍ୟୁରେ ଅନ୍ୟ ବିଧୁର ପକ୍ଷୀର ହୃତ୍‌ସ୍ପନ୍ଦନ ବନ୍ଦ ହୋଇଯାଏ ।"

–"ଆଚ୍ଛା ।"

ସେ 'ଆଚ୍ଛା'ରେ କୌଣସି ଆନ୍ତରିକତା ନଥିଲା ଭଳି ମନେହେଲା । ତାଙ୍କ ମନଭିତରେ କିଛି ଭାବାନ୍ତରର ଢେଉ ସୃଷ୍ଟି ହେଉଥିଲା । କ୍ରିଷ୍ଟେନ ଭାବୁଥିଲେ, ସାରା କେଉଁ ବିଷୟରେ ଚିନ୍ତା କରୁଛନ୍ତି ? ତାଙ୍କୁ କ'ଣ ଚିଲିକା ପସନ୍ଦ ହେଉନି ?

ଇତି ମଧ୍ୟରେ ସେମାନେ ନଳବଣର ଖୁବ ନିକଟକୁ ଆସି ପହଞ୍ଚି ଯାଇଥିଲେ । ଦୂରରୁ କ୍ରିଷ୍ଟେନଙ୍କୁ ଦେଖି ପକ୍ଷୀମାନେ ଯେପରି ସ୍ୱାଗତିକା ଗାନ ଆରମ୍ଭ କରିଦେଲେ । ହର୍ଷ, କଳରବ ବୃଦ୍ଧି ପାଉଥିଲା । କେତୋଟି ପକ୍ଷୀ ମୋଟରବୋଟର ଚାରିପଟେ ଚକ୍କର କାଟୁଥିଲେ । ଏତେ ପକ୍ଷୀଙ୍କୁ ଦେଖି ପିଲାମାନେ ଆନନ୍ଦରେ ତାଳି ମାରୁଥିଲେ ।

ଅକ୍ଟୋବର ମାସର ଖରା ମଧ୍ୟ ସାରା ସହି ପାରୁନଥିଲେ । ଆଖିରେ କଳା ଗଗଲ୍‌ସ ଲଗାଇ ମଧ୍ୟ ସେ ଆଖିରେ ପାପୁଲି ଡାଙ୍କି ଦୂରକୁ ଦେଖୁଥିଲେ ।

କ୍ରିଷ୍ଟେନ ପତ୍ନୀ ଓ ପିଲାଙ୍କୁ ଖୁସି କରାଇବା ପାଇଁ ଉପରେ କର୍କଶ ଗାନ କରି

ଉଡୁଥିବା ଗୋଟିଏ ପକ୍ଷୀକୁ ଦେଖାଇ କହିଲେ—''ଏଇ ଦେଖ, କେତେ ଜୋରରେ ଚିଲାଉଛି ଏ ଟିଟ୍ଟିଭ ପକ୍ଷୀଟି । କିନ୍ତୁ ଏଇଟି ଏତେ ଭୟାଳୁ ଯେ ରାତିରେ ଶୋଇଲା ବେଳେ ଉପରକୁ ଗୋଡ଼ ଟେକି ଶୁଏ । ତା'ର ଭୟ ଯେ କାଳେ ଆକାଶର ଛାତଟା ଭାଙ୍ଗି ତା' ଉପରେ ଖସିପଡ଼ିବ !''

ଏକ ହସର ଲହରୀଟିଏ ଖେଳିଗଲା ସମସ୍ତଙ୍କ ଚେହେରାରେ । ଏଥର ସାରାଙ୍କ ଓଠରୁ ହସ ନିଃସୃତ ହେଲା ।

ଲାରା ପଚାରିଲା—''ଡାଡି, ଉପରେ ଚକ୍କର କାଟି ଉଡ଼ି ବୂଲୁଥିବା ଆଉ ପକ୍ଷୀଟିର ନା କ'ଣ ?''

—''ସେଇଟା ଶଙ୍ଖଚିଲ—ବ୍ରାହ୍ମନି କାଇଟ । ସେ ଗଳା ଖଂକାରି ଘାଗଡ଼ା ସ୍ୱରରେ କହୁଛି, ମୁଁ ଚିଲିକାର ପୁଲିସି ।''

ନାଉରୀଟି ଖଣ୍ଡି ଇଂରାଜୀରେ ପାଳି ଧରିଲା—''ସାର୍‌, ସେ କହୁଛି ମୁଁ ଖାଇବି ଇଲିଶି ।''

କ୍ରିଷ୍ଟେନ ଓ ପିଲାମାନେ ପୁଣି ହସିଉଠିଲେ ।

—''ସାରା ଏଇ ପକ୍ଷୀକୁ ଦେଖ । ଜାକ୍‌ନା ଏହାର ନାମ । ଏହି ରଙ୍ଗିନ ପକ୍ଷୀଟି ସ୍ୱଭାବରେ ମଧ୍ୟ ବଡ଼ ରଙ୍ଗିନ । ଏ ଏକ ବାରବନିତା । ଯାର ଅନେକ ସ୍ୱାମୀ । ପରୀ କାହାଣୀର ମାଲ୍ୟାଣୀ ପରି ସବୁ ସ୍ୱାମୀଙ୍କୁ ଏ ମେଣ୍ଢା ବନାଇ ତାଙ୍କ ଦ୍ୱାରା ସବୁ ଗୃହକାର୍ଯ୍ୟ କରାଏ । ଜଣେ ପୁରୁଷ ପକ୍ଷୀ ସହ ରହି ଅଣ୍ଡା ଦେଇ ଚାଲିଯାଏ । ବିଚରା ପୁରୁଷ ପକ୍ଷୀଟି ଅଣ୍ଡା ଉଷୁମାଇ ଛୁଆକୁ ଲାଳନ ପାଳନ କରୁଥିବା ବେଳେ ସେ ଆଉ ଗୋଟିଏ ପୁରୁଷକୁ ଧରି ବାଟ କାଟେ ।''

ସାରା ପୁଣି ନିଜ ଭାବନା ରାଜ୍ୟରେ ହଜିଗଲେ । ସକାଳର ଶୀତୁଆ ପବନ ଶିରିଶିରି ହୋଇ ବହୁଥିଲା । ସେ ନିଜର ଚୂର୍ଣ୍ଣକୁନ୍ତଳକୁ ବାରମ୍ବାର ସଜାଡୁଥିଲେ ।

ନଳବଣରେ ଦୀର୍ଘକାୟ ସାରସଟି ଦିଶୁଥିଲା ନଳବଣର ସମ୍ରାଟ ପରି । ଲାଗୁଥିଲା ପାରିଧିରେ ବିଜେ କରିଛନ୍ତି ସମ୍ରାଟ । ପଛେ ପଛେ ଗୋଡ଼ାଉଛନ୍ତି ତାଙ୍କର ପାରିଷଦ ଅମାତ୍ୟ ଓ ଅନ୍ୟ ଥାଟପାଟ ।

ଡଙ୍ଗାରୁ ଓହ୍ଲାଇ କ୍ରିଷ୍ଟେନ ପିଲା ଦୁଇଟିଙ୍କୁ କାନ୍ଧେଇ ଟାୱାର ପାଖରେ ଛାଡ଼ିଲେ । ଏବେ ସାରାଙ୍କୁ କହିଲେ—''ତମର ପାଣିକୁ ଓହ୍ଲାଇବାର ଦରକାର ନାହିଁ । ଚାଲ, ମୁଁ ତୁମକୁ ଟେକି ଟେକି ନେଇଯିବି ।''

ସାରା ହାତ ଗୋଡ଼ ଛିଞ୍ଚାଡ଼ି ନାହିଁ ନାହିଁ କଲେ । କହିଲେ–''ମୁଁ ନିଜେ ଚାଲିଯିବି ।''

ନାବିକଟି ସେମାନଙ୍କର ଜିନିଷ ପତ୍ର ଖାଦ୍ୟପଦାର୍ଥ ଧରି ପଛେ ପଛେ ଆସିଲା ।

ଏଥର ସାରସ ସାରସୀ ଆସିଥିଲେ ଦୁଇଟି ଶାବକ ନେଇ । ସେମାନେ କ୍ରିଷ୍ଟେନଙ୍କୁ ଦେଖି ପାଖକୁ ଆସିଲେ । କ୍ରିଷ୍ଟେନଙ୍କ ପିଲା ଦୁଇଟି ସାରସଶାବକ ଦୁଇଟିକୁ ଦେଖି ଆତ୍ମହରା ହେଉଥିଲେ । ବୋଧହୁଏ ସେହିଭଳି ପ୍ରତିକ୍ରିୟା ଥିଲା ସାରସଶାବକଦ୍ୱୟଙ୍କର କ୍ରିଷ୍ଟେନଙ୍କ ପିଲାଙ୍କୁ ଦେଖି । ସେ ଦୁହିଁଙ୍କର ରେଶମୀ କେଶ, ଗାଢ଼ ନୀଳ, ଲୋହିତ ରଙ୍ଗର ପୋଷାକରେ ସେ ଦୁହେଁ ଦିଶୁଥିଲେ ଦୁଇଟି କଣ୍ଢେଇ ପରି ।

ସାରସଟି ପୁଲକିତ ହୋଇ ବୋଧେ କହୁଥିଲା–''ଦେଖ, ଆମେ ଦୁଇ, ଆମର ବି ଦୁଇ ।''

ଫେରିଲା ବେଳକୁ ଭାଲେରୀ ଶୀର୍ଷରେ ଏକ ଆଶ୍ଚର୍ଯ୍ୟଜନକ ସୂର୍ଯ୍ୟାସ୍ତ କିରଣ ବିଞ୍ଚି ହୋଇ ପଡ଼ିଥିଲା । ଅସ୍ତ ସୂର୍ଯ୍ୟର ଶେଷ କିରଣ ତାର୍ଯ୍ୟକ ଭାବେ ବିଚ୍ଛୁରିତ ହୋଇ ଚିଲିକାର ଢେଉ ଉପରେ ନୃତ୍ୟ କରୁଥିଲା ।

ସେଦିନର ସୂର୍ଯ୍ୟାସ୍ତ ଥିଲା ଯେପରି ଆଶ୍ଚର୍ଯ୍ୟଜନକ, ଜ୍ୟୋତ୍ସ୍ନାଲୋକ ଥିଲା ସେପରି ରହସ୍ୟମୟ । ସେହି ଟୋପା ଜହ୍ନକିରଣ ସାରାଙ୍କୁ ପାନ୍ଥ-ନିବାସର କଟେଜରୁ ବାହାରକରି ଆଣିଥିଲା ଲନ୍ ଉପରକୁ । ସେ ଟୋପା ଆଲୁଅରେ ରୂପାପରି ଚିକଚିକ୍ କରୁଥିଲେ ଚିଲିକାର ନୀଳବୀଚି ସବୁ ।

ଜହ୍ନକୁ ଚାହିଁ ଚାହିଁ ସାରା ପଦଚାରଣା କରୁଥିଲେ ଲନ୍‌ର ଏପଟୁ ସେପଟ । କ'ଣ ଭାବୁଥିଲେ ସେ ? କେଉଁ ଚିନ୍ତା ତାଙ୍କୁ କୋରି ପକାଉଥିଲା ଭିତରେ ଭିତରେ ? ଝର୍କା ସେପଟେ କ୍ରିଷ୍ଟେନ ସନ୍ଦିଗ୍ଧ ଚିତ୍ତରେ ପଦଚାରଣା କରୁଥିଲେ ।

ଆକାଶରେ ଧଳା ବାଦଲ ଟୁକୁରାସବୁ ଏକ ମୃତପକ୍ଷୀର ପର ପରି ଏଣେ ତେଣେ ଭିଣିହୋଇ ପଡ଼ିଥିଲେ । ସେତେବେଳେ କ୍ରିଷ୍ଟେନ ପିଲାମାନଙ୍କୁ କାହାଣୀ କହି ଶୁଣାଇ ପକାଉଥିଲେ ।

ପିଲାଙ୍କୁ ଶୁଆଇ ସେ ଲନ୍‌କୁ ଆସିଲେ । ସାରାଙ୍କ କାନ୍ଧରେ ହାତ ରଖିଲେ ।

ସାରା ଅପ୍ରସ୍ତୁତ ହୋଇ ପଚାରିଲେ—"କେତେମାସ ହେଲା ତମେ କାନାଡ଼ା ଯାଇନ, ମନେ ଅଛି, କ୍ରିସ୍ ?"

—"ଆଉ ଆମ ସରି, ସାରା ! ତମେ ତ ଜାଣିଛ ମୋର ପ୍ରୋଜେକ୍ଟ... ।"

—"ତମର ପ୍ରୋଜେକ୍ଟ ସବୁକିଛି । ମୁଁ କିଛି ନୁହେଁ ? ତମେ ତା'ହେଲେ ସାରା ଅପେକ୍ଷା ସାରସକୁ ବେଶୀ ମହତ୍ତ୍ୱ ଦିଅ ?"

—"ତା'ନୁହେଁ, ଡାର୍ଲିଂ । ତମେ ତ ଜାଣ କୌଣସି କାମ ହାତକୁ ନେଇ ମୁଁ ଅଧାରେ ଛାଡ଼ିପାରେନି ।"

—"ମୁଁ ଜାଣେ ତମେ କାମ-ନିଶାସକ୍ତ ମଣିଷ । ହେଲେ, ତମର ସ୍ତ୍ରୀ-ପୁତ୍ର-କନ୍ୟା ଅଛନ୍ତି । ସେମାନଙ୍କ ପ୍ରତି ତୁମର କିଛି କର୍ତ୍ତବ୍ୟ ଅଛି କି ନାହିଁ ?"

ସେହି ଅଭିମାନ-ପୂର୍ଣ୍ଣ ବାର୍ତ୍ତାଳାପ ସତେ ଯେପରି ଖୋଲି ଦେଇଥିଲା ସାରାଙ୍କ ଛାତିର ଆନିକଟର କବାଟ । ସେଥିରୁ ଡେଇଁ ଆସିଲା ଲୁହର ବନ୍ୟା-ଜଳ ।

ସେଦିନ ରାତ୍ରିର ନିରନ୍ଧ୍ର ଅନ୍ଧକାର ମଧ୍ୟରେ ଦୁହେଁ ଦୁହିଁଙ୍କୁ ଜଡ଼ାଇ ଧରିଥିଲେ । କ୍ରିଷ୍ଟେନ ଚୁମ୍ବନରେ ପୋତି ପକାଉଥିଲେ ସାରାଙ୍କ ସର୍ବାଙ୍ଗ । ସେଥିରେ ସାରାଙ୍କ ଅଭିମାନ ଶାନ୍ତ ହୋଇନଥିଲା । ନିର୍ବାପିତ ହୋଇନଥିଲା ତାଙ୍କର ଦେହର ଉତ୍ତାପ । ସେ କଇଁ କଇଁ ହୋଇ କାନ୍ଦି କେତେବେଳେ ଶୋଇପଡ଼ିଥିଲେ ।

ରାତିସାରା କ୍ରିଷ୍ଟେନ୍ ଶୋଇପାରିଲେନି । ସେ ଭାବିପାରୁନଥିଲେ—ସାରାଙ୍କର ହୋଇଛି କ'ଣ ? ତାଙ୍କଠି ଏଭଳି ପରିବର୍ତ୍ତନର ହେତୁ କ'ଣ ହୋଇପାରେ ?

ସେ ଯେପରି ଏକ ବହୁମୁହାଣି ଛକ ଉପରେ ଠିଆ ହୋଇ ନିଜର ଚଲାରାସ୍ତାକୁ ନିର୍ଦ୍ଧାରଣ କରି ପାରୁନଥିଲେ । ଚକ୍ଷୁ-ସମକ୍ଷରେ ଏକ ଲକ୍ଷ୍ୟ । ଏକ ମହତ୍ ଆକାଂକ୍ଷା । ଏଣେ ପତ୍ନୀ ଓ ପରିବାର ପ୍ରତି ପ୍ରେମ । କେଉଁଟି ଛାଡ଼ିବେ ସେ ? ଏକ ପାର୍ଶ୍ୱରେ ପ୍ରତିଷ୍ଠାର ମୋହ । ଅନ୍ୟ ପାର୍ଶ୍ୱରେ ପ୍ରେମର ଚୁମ୍ବକୀୟ ଆକର୍ଷଣ । ସେ ନିଜକୁ ପ୍ରଶ୍ନ କରୁଥିଲେ—ଦୁଇଟିଯାକ ଏକାଧାରରେ ପ୍ରାପ୍ତ କରିହେବନି ?

ଲକ୍ଷ୍ୟସ୍ଥଳକୁ ଅଗ୍ରସର ହେଲାବେଳେ ପତ୍ନୀ ଓ ପରିବାର ପଛକୁ କାହିଁକି ଟାଣି ଧରନ୍ତି ? ଲକ୍ଷ୍ୟ ପଥରୁ କାହିଁକି ବିଚ୍ୟୁତି ଆସେ ? ପୁଣି ସେମାନଙ୍କ ପାଇଁ କର୍ତ୍ତବ୍ୟ ନ କଲେ ମନଟା କାହିଁକି ବିକଳରେ ହମ୍ବାରଡ଼ି ଛାଡ଼େ ? ପାରିବାରିକ ଲୋକଟି ଏକ

ବ୍ଲିଙ୍କର-ଯୁକ୍ତ ଘୋଟକ ପରି ନିଜର ଲକ୍ଷ୍ୟ ଆଡ଼କୁ ଦୌଡ଼ିବା କ'ଣ ସମ୍ଭବ ନୁହେଁ ? ମଣିଷକୁ ଏ ମୋହମାୟାର ଦଲ୍‌ଦଲ୍‌ରୁ କ'ଣ ନିସ୍ତାର ନାହିଁ ?

ପରବର୍ତ୍ତୀ ଦିନଗୁଡ଼ିକରେ ସେ ଚିଲିକାର ଅନ୍ୟ ଦର୍ଶନୀୟ ସ୍ଥାନଗୁଡ଼ିକୁ ସାରା ଓ ପିଲାମାନଙ୍କୁ ବୁଲାଇ ନେଇଥିଲେ । ପ୍ରଥମେ ଯାଇଥିଲେ ଦକ୍ଷିଣ ନାସିରେ ଥିବା ରମ୍ଭାକୁ ।

ଏହାରି ପାଖରେ ହନିମୁନ୍ ଆଇଲ୍ୟାଣ୍ଡ । ଏହା ଏକ ବୃକ୍ଷଲତା ପରିବେଷ୍ଟିତ ଶାନ୍ତ ନିର୍ଜନ ଦ୍ୱୀପ । ସେ ନିଜେ ବୋଧେ ତାଙ୍କର ହନିମୁନ ପାଇଁ ଏଭଳି ନିର୍ଜନ ସ୍ଥାନ ପସନ୍ଦ କରିଥାନ୍ତେ । କିନ୍ତୁ ସାରାଙ୍କୁ ଖୁସି କରାଇବା ପାଇଁ ସେ ଯାଇଥିଲେ ଫ୍ଲୋରିଡ଼ାର ଅର୍ଲାଣ୍ଡୋ । ସେଇଟି ଏକ ଧୂମଧାମ ଆମୋଦପ୍ରମୋଦର ଚାକଚକ୍ୟଭରା ନଗରୀ । ଚାରିଆଡ଼େ ହାଉଳାଉ ଲୋକ । ନିର୍ଜନତାର ନାମଗନ୍ଧ ନାହିଁ । ତେଣୁ ସେଠି ସେ ଚିର ଇପ୍‌ସିତ ଶାନ୍ତି ପାଇ ପାରିନଥିଲେ । କିନ୍ତୁ ସାରାଙ୍କ ଖୁସିକୁ ପ୍ରାଥମିକତା ଦେବା ଲକ୍ଷ୍ୟରେ ସେଠିକୁ ଯିବାକୁ ରାଜି ହୋଇଥିଲେ ।

ହନିମୁନ ଦ୍ୱୀପ ପରେ ଗଲେ ବ୍ରେକଫାଷ୍ଟ ଆଇଲ୍ୟାଣ୍ଡକୁ । ଲାରା କୌତୂହଳୀ ହୋଇ ପଚାରିଲା–''ଡାଡି, ଏଠିକୁ କ'ଣ ପକ୍ଷୀମାନେ ବ୍ରେକଫାଷ୍ଟ ଖାଇବାକୁ ଆସନ୍ତି ?''

–''ହଁ, ଆଗେ ଇଂରେଜମାନେ ଏହି କୁଦକୁ ଆସି ଏହାର ନିରୋଳା ପରିବେଶରେ ବ୍ରେକ୍‌ଫାଷ୍ଟ ଖାଉଥିଲେ ।''

ଆଉ ଦିନେ ସେମାନେ ଯାଇଥିଲେ କାଳିଜାଈ ପାହାଡ଼ । ବର କୂଳରୁ ଅଧଘଣ୍ଟା ବାଟ । ବୃକ୍ଷଲତା, ଗୁଳ୍ମ, ଘାସରେ ପରିବେଷ୍ଟିତ ଏ କ୍ଷୁଦ୍ର ଦ୍ୱୀପ । ମନ୍ଦିର ପାଖରେ ମନ୍ଦାର ଓ ଟଗର ଫୁଲର ଗଛ । ପଛପଟେ ତମାଳ, ବଉଳ, ନାରିକେଳର ଦ୍ରୁମ । ମନ୍ଦିର ଭିତରେ ମା କାଳିଜାଈ ଦୁଇ ସହଚରୀଙ୍କ ଗହଣରେ ଶୋଭା ପାଉଥିଲେ ।

ଏହି ମନ୍ଦିରଟି ପାରିକୁଦର ରାଜା ମାନସିଂହଙ୍କ ଦ୍ୱାରା ନିର୍ମିତ । ସେଠି ଥିବା ଫଳକ ଅନୁସାରେ ଖୋର୍ଦ୍ଧା ରାଜା ପାରିକୁଦ ଉପରେ ଆକ୍ରମଣ କଲାବେଳେ ପାରିକୁଦର ରାଜା ମା' କାଳିଜାଈଙ୍କୁ ସୁମରଣା କରିଥିଲେ । ମା' ପଠାଇଥିଲେ ଏରା ପକ୍ଷୀଙ୍କ ଫଉଜ । ହଜାର ହଜାର ଏରା ପକ୍ଷୀଙ୍କ ଗୋଲାପୀ ଡେଣାକୁ ଦୂରରୁ

ଦେଖି ଏକ ବୃହତ୍ ସୈନ୍ୟବାହିନୀ ଭାବି ଖୋର୍ଦ୍ଧା ରାଜା ଫେରିଯାଇଥିଲେ । ତା’ ପରେ ଏ ମନ୍ଦିର ତିଆରି ହୋଇଥିଲା ।

ସେଠି ଥିଲା ଆଉ ଗୋଟିଏ ଫଳକ । ସେଥିରେ ଥିଲା କିଛି ପରିବ୍ରାଜକ ପକ୍ଷୀଙ୍କ ଚିତ୍ର । ଲେଖା ଥିଲା–ଆପଣମାନେ ଯେମିତି ଦୂରରୁ ଆସି ନିରାପଦରେ ସ୍ୱଗୃହକୁ ଫେରିବାକୁ ଚାହାନ୍ତି, ଏ ପରିବ୍ରାଜକ ପକ୍ଷୀମାନେ ମଧ୍ୟ ସେହିଭଳି ସ୍ୱଦେଶକୁ ଫେରିଯିବାକୁ ଚାହାନ୍ତି ।

କ୍ରିଷ୍ଟେନ୍ ଭାବୁଥିଲେ, ଏହି ଫଳକର ବାର୍ତ୍ତା କ’ଣ ପକ୍ଷୀ ରକ୍ଷଣାବେକ୍ଷଣ ପାଇଁ ଯଥେଷ୍ଟ ?

ଏକ ମୟୂରର କୋକାଧ୍ୱନି ଏବଂ କେତୋଟି ଗଞ୍ଜାର କକର-କ ରାବରେ ସେମାନଙ୍କ ସ୍ୱାଗତ ହୋଇଥିଲା ।

ସକାଳୁ ସକାଳୁ କାଳିଜାଈରେ ଗହଳି ନ ଥିଲା । କ୍ରିଷ୍ଟେନ ଦମ୍ପତି ସେଠି ପାଦଦେବା ଆଗରୁ ସେଠି ପାହାଚ ଉପରେ ବସିଥିଲା ଆଉ ଗୋଟିଏ ଦମ୍ପତି ।

ଦୁଇଟି ପାରାବତ ମୁହଁକୁ ମୁହଁ ଯୋଡ଼ି ଘୁଟୁରୁ ଘୁଁ କଲାପରି ନିଭୃତ ଆଳାପରେ ମଗ୍ନଥିଲେ ସେ ଦୁହେଁ ।

ସେ ତରୁଣ ତରୁଣୀଙ୍କ ଗଳାରେ ଝୁଲୁଥିଲା ଗେଣ୍ଡୁ ଫୁଲର ମାଳ ।

ତରୁଣୀର ଗଣ୍ଡଦେଶରୁ ବହୁଥିଲା ଅବିରତ ଅଶ୍ରୁଧାର । ତରୁଣଟି ତାକୁ କିଛି କହି ବୁଝାଉଥିଲା । କ୍ରିଷ୍ଟେନଙ୍କୁ ଦେଖି ସେ ଉଠିପଡ଼ିଲା –‘‘ନମସ୍କାର ସାହେବ ।’’

କ୍ରିଷ୍ଟେନ ତାକୁ ଚିହ୍ନିଲେ । ଏ ସେହି ନାଉରୀ ପିଲା ଯେ କାଳିଜାଈ ଗୀତ ଗାଇ ଗାଇ ପ୍ରଥମ ଦିନ ନାଆ ବାହୁଥିଲା ।

–‘‘ଏ ଝିଅଟି କାନ୍ଦୁଛି କାହିଁକି ?’’

ନାଉରୀଟି ଉତ୍ତର ଦେବାକୁ ଶବ୍ଦ ଯୋଗାଡ଼ କରିବାକୁ ଚେଷ୍ଟା କରି ପାରୁନଥିଲା ।

ଗାଇଡଟି ତା’ଠୁ ସବୁ ବୃତ୍ତାନ୍ତ ବୁଝି କ୍ରିଷ୍ଟେନଙ୍କୁ ଜଣାଇଲା–‘‘ପୁଅଟିର ନାଁ କାହ୍ନା । ଝିଅଟିର ନାଁ ଖୁଲଣା । ଦୁହିଁଙ୍କର ଘର ଏ ଚିଲିକା କୂଳର ଗୋଟିଏ ଗାଁରେ । ଦୁହେଁ ପରସ୍ପରକୁ ଭଲ ପାଉଥିଲେ । କିନ୍ତୁ ପରିବାରର ସଦସ୍ୟଙ୍କ ବିରୋଧ ଯୋଗୁଁ

ଅଧା ରାତିରେ ଲୁଚିକରି ଗାଁ ଛାଡ଼ି ଚାଲିଆସିଛନ୍ତି ଏବଂ ଏଠି ଠାକୁରାଣୀଙ୍କୁ ସାକ୍ଷୀ ରଖି ବିବାହ କରିଛନ୍ତି । ସେ ଦୁହେଁ ଆଶଙ୍କିତ ଯେ ତାଙ୍କୁ ଖୋଜି ଖୋଜି ଗାଁ ଲୋକେ ଏଠି ପହଞ୍ଚିଯିବେ ।''

—''କିନ୍ତୁ ମିଆଁ-ବିବି ରାଜି ତ ଗାଁରେ ପ୍ରତିବାଦ କାହିଁକି ?''

—''ଦୁହେଁ କେଉଟ । କିନ୍ତୁ କାହ୍ନା ମାଛଧରା କେଉଟ । ଖୁଲଣା ଚୁଡ଼ାକୁଟା କେଉଟ ।

—''ବଡ଼ ସରଳ କଥାଟିଏ । ଗାଁ ଲୋକେ ତାକୁ ଜଟିଳ କରୁଛନ୍ତି କାହିଁକି ? ଆଶ୍ଚର୍ଯ୍ୟ ।'' ସାରା ପାଖକୁ ଆସି କହିଲେ ।

—''ତା ନୁହେଁ ମାଡାମ । ସେ ଝିଅ ଅନୁତାପ କରୁଛି ଯେ ସେ ବାପାମା'ଙ୍କ ସ୍ୱୀକୃତି ବିନା ବାହାହୋଇ ଅପରାଧ କରିଛି । ଯେତେହେଲେ ସେମାନେ ମା'ବାପା । ପାଳି ପୋଷି ବଡ଼ କରିଛନ୍ତି । ତାଙ୍କ ମନରେ ଦୁଃଖ ଦେଇ ସେ ଠିକ୍ କରିନି । ସେମାନଙ୍କ ସ୍ୱୀକୃତିରେ ବିବାହ ହୋଇଥିଲେ ବାଣ, ବାଜା, ରୋଷଣି ସହ ଉତ୍ସବଟି ଧୁମ୍‌ଧାମରେ ପାଳନ କରାଯାଇଥାନ୍ତା ।''

—''ଓଃ ଆଇ.ସି. । ଠିକ୍ ଅଛି । ଆମେ ତାଙ୍କ ବାପା ମା'ଙ୍କୁ ଓ ଗାଁ ବାଲାଙ୍କୁ ବୁଝାଇବା ।'' ତା'ପରେ ଖୁଲଣାକୁ ଲକ୍ଷ୍ୟକରି କ୍ରିଷ୍ଟେନ କହିଲେ—''ଉଠ ୟଙ୍ଗଗାର୍ଲ । ଏବେ ତୁମର ଫଟୋ ନେବା । ନ ଥାଉ ବାଣ, ନ ଥାଉ ବାଜା, ନ ଥାଉ ରୋଷଣି । ଆମେ ତୁମର ବିବାହର ଉତ୍ସବ ମନାଇବା । ମୁଁ ତୁମର ଏ ବରଣ ମାଳା ସହ ପ୍ରଥମେ ଫଟୋ ନିଏ ।''

ଏଥର ବାଳିକା ବଧୂଟିର ବଧୁଲି ଓଠରୁ ହସ ଚହଟିଲା ।

ଶାଗୁଆ ପତ୍ରଗହଳୁ କେମିତି ଦିଶେ ରକ୍ତ କରବୀର ?

କଳା କେଶ ମଝିରେ କେମିତି ଦିଶେ ସିନ୍ଦୂରର ଗାର ?

ନେଳୀ ବଉଦ ଭିତରୁ କେମିତି ଦିଶେ ବିଜୁଳିର ଲାସ୍ୟ ?

କାହ୍ନୁରା ମୁହଁରେ ସେମିତି ଝଟକିଲା ଝିଅଟିର ହସ ।

ଫଟୋ ଚୋଳୁ ଚୋଳୁ କ୍ରିଷ୍ଟେନ ମନ୍ତବ୍ୟ ଦେଇଥିଲେ—''ଦାଟ୍‌ସ ଲାଇକ୍ ଏ ଗୁଡ ଗାର୍ଲ ।''

ଏବେ କ୍ରିଷ୍ଟେନ ଓ ପିଲାମାନଙ୍କ ସହ ସେ ଦୁହିଁଙ୍କର ଗୋଟିଏ ଗ୍ରୁପ ଫଟୋ

ଗାଇଡ୍ ନେଲା । ମନ୍ଦିର ପାହାଚ ଉପରେ ଗ୍ରୁପ ଫଟୋ ନିଆଗଲା । ଦୁଇପଟେ ପଞ୍ଚେନ୍ଦ୍ରିୟକୁ ବିସ୍ତାରିତ କରି ବସିଥିଲେ ଦୁଇଟି ସିଂହ ମୂର୍ତ୍ତି । ମଝିରେ ବସିଲେ ସେମାନେ ।

କାଳିଜାଈ ଠାକୁରାଣୀଙ୍କ ଦର୍ଶନ ପରେ ସେ ପାହାଡ଼ର ଚାରିପଟେ ବୁଲି ସେମାନେ ଗୋଟିଏ ମଟର ବୋଟରେ ଫେରିଲେ ।

ରାସ୍ତାରେ କ୍ରିଷ୍ଟେନ କହିଲେ–"ଚାଲ, ପାନ୍ଥନିବାସରେ ମୁଁ ତୁମକୁ ପାର୍ଟି ଦେବି । ଦେୟାର ହାଜ୍ ଟୁ ବି ଏ ସେଲିବ୍ରେସନ ।"

ସାରା ସବୁ ଦେଖୁଥିଲେ । ସବୁ ଶୁଣୁଥିଲେ । କେମିତି ତାଙ୍କର ସ୍ୱାମୀ ନାମକ ପ୍ରାଣୀଟି ଯେଉଁଠିକୁ ଗଲେ ବି କ୍ଷୀର ସଙ୍ଗେ ନୀର ପରି ମିଶି ଯାଉଛି । ମିଶି ଯାଉଛି ତାଙ୍କର ହସ କାନ୍ଦ ଓ ସୁଖଦୁଃଖରେ । କିନ୍ତୁ ତାଙ୍କ ସ୍ତ୍ରୀଙ୍କ ପ୍ରତି ସେ ଏ ଭଳି ପାଷାଣ କାହିଁକି–ମନେ ମନେ ସେ ଏୟା ଭାବୁଥିଲେ ।

ଫେରିଲାବେଳେ ସେ ସାରାଙ୍କୁ ଓ ପିଲାମାନଙ୍କୁ କାଳିଜାଈ ଗଣ୍ଡରେ ଘଟିଥିବା ଜାଈର କରୁଣ କାହାଣୀକୁ ଶୁଣାଉଥିଲେ । ଟିପ୍ପଣୀ ଦେଉଥିଲେ–"ଏଠି ଭାରତର ଝିଅଟିଏ ବାହା ହେଲା ପରେ ବି ପିତାମାତାଙ୍କ ସହ ଏକ ଅଦୃଶ୍ୟ ସ୍ନେହର ରଜ୍ଜୁରେ ବନ୍ଧା ହୋଇଥାଏ ।"

ସାରାଙ୍କ ଆଡ଼େ ଏକ ଦୁଷ୍ଟାମିର ଚାହାଣି ଛାଡ଼ି ଲାରାକୁ କୋଳକୁ ଟାଣି କହିଲେ– "ତୁ ବାହା ହେଲେ ଆମକୁ ଭୁଲିଯିବୁନି ତ ?"

–"ନୋ ଡାଡି, ମୁଁ ତୁମକୁ ଛାଡ଼ି ଆଉ କୁଆଡ଼େ ଯିବିନି ।"–କ୍ରିଷ୍ଟେନଙ୍କ ଗାଲରେ ଚୁମାଟିଏ ଦେଇ କହିଲା ସେ ।

ବାଟରେ ପଡ଼ିଥିଲା ଚଢ଼େଇହଗା ପାହାଡ଼ । ସେହି ପାହାଡ଼ର ଧବଳ ଧୂସର ଚେହେରା ଦେଖି ଲାରା ଉତ୍ସୁକ ହୋଇ ପଚାରିଲା–"ଏଠିକି କ'ଣ ସତେ ପକ୍ଷୀମାନେ 'ଟଏଲେଟ୍' କରିବାକୁ ଆସନ୍ତି ?"

ତା'ପରେ ସେ ଖିଲିଖିଲି ହୋଇ ହସି ଉଠିଥିଲା । ସେ ହସ ବନ୍ଦ ହୋଇଯାଇଥିଲା ସାରାଙ୍କ ତୀକ୍ଷ୍ଣ ଚାହାଣିରେ ।

ଆଉ ଦିନେ ଯାଇଥିଲେ କୋଣାର୍କ । ଏହି ପୃଥିବୀ-ପ୍ରସିଦ୍ଧ ସୂର୍ଯ୍ୟ ମନ୍ଦିରର ଭଗ୍ନାବଶେଷ ଭିତରେ କେବଳ ମୁଖଶାଳାଟି ମୁଣ୍ଡ ଟେକି ଠିଆ ହୋଇଛି । କିନ୍ତୁ

ଯେତିକି ଅବଶେଷ ରହିଛି, ତା'ର କାରୁକାର୍ଯ୍ୟ ଦେଖି ଅଭିଭୂତ ହୋଇଥିଲେ କ୍ରିଷ୍ଟେନ ଓ ସାରା । ଓଡ଼ିଆ କାରିଗର ଓଡ଼ିଶାର ଜନଜୀବନର ଅପୂର୍ବ କାରୁକାର୍ଯ୍ୟର ଚିତ୍ର ମନ୍ଦିର ଗାତ୍ରରେ ନିଖୁଣ ଭାବେ ଦର୍ଶାଇଛି । କିନ୍ତୁ ସେହି କଳାକାରର ଉତ୍କର୍ଷ ବେଶୀ ଦେଖିବାକୁ ମିଳେ ନାରୀମାନଙ୍କ ଚିତ୍ରଣରେ । ନାରୀ କେଉଁଠି ଅଭିସାରିକା ତ କେଉଁଠି କଳହାନ୍ତରିତା । କେଉଁଠି ପ୍ରସାଧନରତା ତ କେଉଁଠି ନୃତ୍ୟ-ସଂଗୀତରେ ଅନୁରକ୍ତା । କେଉଁଠି ରତିକ୍ରୀଡ଼ା-ରତା ତ କେଉଁଠି ଏକ ଶାଳଭଞ୍ଜିକା ରୂପେ ଦର୍ଶିତା ହୋଇଛି ।

ନୀରବରେ ଚାଲୁଥିଲେ ବି ଖୁବ ତନ୍ମୟତାର ସହ ଏସବୁ କାରୁକାର୍ଯ୍ୟକୁ ଦେଖୁଥିଲେ ସାରା ।

ପିପିଲି ବାଟେ ଫେରିଲା ବେଳେ ସେ ମୁହଁ ଖୋଲିଲେ—''ଗାଡ଼ି ରଖ ।''

ରାସ୍ତା ଦୁଇକଡ଼ରେ ବିଭିନ୍ନ ପ୍ରକାର ଆପଲିକ୍ ୱାର୍କର ପସରା ମେଲିଥିଲା । ରଙ୍ଗ ବେରଙ୍ଗର ଝାଲର, ଚାନ୍ଦୁଆ, ପଟ୍ଟଚିତ୍ର, ଛତା ପ୍ରଭୃତି ପ୍ରତ୍ୟେକ ଦୋକାନରେ ଭର୍ତ୍ତି ହୋଇଥିଲା । ତା'ରି ଭିତରେ ମୂଳଚାଳ କରୁଥିବା ଦଳଦଳ ଟୁରିଷ୍ଟ ଫୁଲ ବଗିଚା ଭିତରେ ପ୍ରଜାପତି ଭଳି ଦିଶୁଥିଲେ । ସେଠି କ୍ରିଷ୍ଟେନ ପ୍ରଥମ କରି ଲକ୍ଷ୍ୟକଲେ ସାରାଙ୍କଠି ନାରୀ-ସୁଲଭ ଚଞ୍ଚଳତା ।

ସେ ମନିପର୍ସ, ହାଣ୍ଡ ବ୍ୟାଗ, ୱାଲ ହାଙ୍ଗିଙ୍ଗ ପ୍ରଭୃତି କିଛି ସ୍ମାରକୀ କାନାଡ଼ା ନେବା ପାଇଁ କିଣିଲେ ।

କ୍ରିଷ୍ଟେନ ତାଙ୍କୁ ବୁଝାଉଥିଲେ—''ଏ ରାଜ୍ୟ ଏକ କଳାକାର ଓ କାରିଗରଙ୍କ ରାଜ୍ୟ । ଆଜି ଯାହା କୋଣାର୍କରେ ଦେଖିଲ, ଏଠିକାର ରାଜଧାନୀରେ ଅସଂଖ୍ୟ ମନ୍ଦିରରେ ସେହି ଅନନ୍ୟ କାରୁକାର୍ଯ୍ୟ ଦେଖିବାକୁ ପାଇବ ।''

ଶେଷଦିନ ସେମାନେ ପୁରୀ ବାଟଦେଇ ଯାଇଥିଲେ ସାତପଡ଼ା । ସେଠି ମାଳମାଳ ଶିଶୁମାର ଦେଖି ପିଲା ଦୁହେଁ ଖୁବ୍ ଆନନ୍ଦିତ ହୋଇଥିଲେ । କ୍ରିଷ୍ଟେନ ବୁଝାଇ ଦେଇଥିଲେ—''ଯେ ଇରାୱାଡ଼ିର ବିରଳ ଶିଶୁମାର । ପୃଥିବୀର ମାତ୍ର ଦୁଇ ତିନୋଟି ସ୍ଥାନରେ ଦେଖିବାକୁ ମିଳେ । ଏ କୁଆଡ଼େ ମଣିଷଙ୍କୁ ଦେଖି ହସେ ।''

—''ସତେ !'' ପିଲାଦୁହେଁ ଚିହିଁକି ଉଠିଲେ । ଅଡ଼ିବସିଲେ—''ଚାଲ ତାଙ୍କ ପାଖକୁ ଯିବା ।''

ସେଦିନ ସାରା ସାରା ନୀରବ ନିଶ୍ଚଳ ହୋଇ ଆକାଶର ନୀଳଶୂନ୍ୟତା ଆଡ଼େ

ଚାହିଁଥିଲେ । କ୍ରିଷ୍ଟେନ ଭାବୁଥିଲେ—କ'ଣ ହେଲାଣି ସାରାର ଚେହେରା । ସେଦିନର ଚଳଚଞ୍ଚଳା ବେଗବତୀ ଝିଅଟି ଏବେ ଶୁଖିକରି କଣ୍ଠାଭଳି ହେଲାଣି । ସେ କ'ଣ କୌଣସି ଦୁରାରୋଗ୍ୟ ରୋଗରେ ପୀଡ଼ିତା ?

ସେଦିନ ରାତ୍ରିରେ ସେ ସାରାଙ୍କ କ୍ଷୀଣ ଅବୟବକୁ ଦୁଇ ବାହୁରେ ଟେକି ଏକ ଗଭୀର ଚୁମ୍ବନଟିଏ ଆଙ୍କିଥିଲେ ତାଙ୍କ ଗଣ୍ଡ ଦେଶରେ । ତାଙ୍କ ମଥା ସାଉଁଳାଇ ପଚାରିଥିଲେ—''କୁହ, ସାରା, କେଉଁ ଦୁଃଖରେ ସନ୍ତୁଳି ହେଉଛ ତମେ ? ତମ ଦେହ ଭଲ ଅଛି ତ ?''

ସାରା ଫାଟି ପଡୁଥିଲେ ଦାରୁଣ କୋହରେ ଅବା ଏକ ଅଜ୍ଞାତ ଅପରାଧ ବୋଧରେ—ତାହା କ୍ରିଷ୍ଟେନଙ୍କୁ ବୁଝାପଡୁନଥିଲା ।

(୫)

କ୍ରିଷ୍ଟେନ କାନାଡ଼ା ଫେରିଲେ ନାହିଁ । ସାରା ଫେରିଲେ ପିଲାଙ୍କୁ ନେଇ ଏବଂ ଢେର ସାରା ଅଭିମାନ ନେଇ । ଏୟାରପୋର୍ଟ ଗଲା ବେଳେ ସେ କାରରେ ନିରବ ନିସ୍ପନ୍ଦ ହୋଇ ବସିଥିଲେ ମାଡାମଥୁସଟଙ୍କ ଏକ ମହମ ମଡ଼େଲ ପରି । ମାତ୍ର କେତୋଟି ରାତ୍ରିର କାକୁତି ମିନତି ତାଙ୍କ ଗୁମାନ ମୋଚନ କରିବା ପାଇଁ ଯଥେଷ୍ଟ ନ ଥିଲା । ଅଭିମାନରେ ତାଙ୍କ ନାକପୁଡ଼ା ଏବେ ଥରି ଉଠୁଥିଲା ।

ତାଙ୍କ ପାଖରେ ରହି ତାଙ୍କ ପ୍ରୋଜେକ୍ଟ କାମରେ ସହାୟତା କରନ୍ତୁ ବୋଲି କ୍ରିଷ୍ଟେନ ସାରାଙ୍କୁ ଅନୁରୋଧ କରିଥିଲେ ।

–"ଏଇଠି ତମେ କିଛି ମାସ ପାଇଁ ରହି ଯାଆନ୍ତନି ?"

–"ନା, ତାହା ସମ୍ଭବ ନୁହେଁ ।"

–"କିନ୍ତୁ କାହିଁକି ?"

–"ସମସ୍ତେ କ'ଣ ତୁମଭଳି ଦାୟିତ୍ୱହୀନ ହୋଇଛନ୍ତି ?"

–"ମୁଁ କ'ଣ ଦାୟିତ୍ୱହୀନ ?"

–"ତମେ ଗୃହସଂସାର କରିଛ । ତୁମ ଘରର ଦାୟିତ୍ୱ କ'ଣ ଶତପ୍ରତିଶତ ମୋର ? ପିଲାଙ୍କ ପ୍ରତିପୋଷଣ ପାଇଁ ତମର କିଛି କରିବାର ନାହିଁ ?"

–"ମୁଁ ତ ସବୁ ଖର୍ଚ୍ଚ ତୁଲାଉଛି ।"

—''ଖାଲି ଖର୍ଚ୍ଚ ତୁଲାଇଲେ ହୋଇଗଲା । ତମେ ଏଠି କାହିଁକି ପଡ଼ିରହିଛ ?

—''ପକ୍ଷୀ ଅବଲୋକନ ତମର ବି ଥିଲା ହବି । ତମେ ଅନ୍ତତଃ ମୋତେ ବୁଝି ପାରିବ ।''

—''ହବି କୁ ବୃତ୍ତି କରିହୁଏନା । ତମେ ପାଗଳ ବୋଲି କ'ଣ ସମସ୍ତେ ପାଗଳ ହେବେ ? ତମେ ନିଜକୁ ଭାବିଛ କ'ଣ ? ତମେ କ'ଣ ଦ୍ୱିତୀୟ ଈଶ୍ୱର ? ପକ୍ଷୀ ଜଗତ ପାଇଁ ତମେ ଗଢ଼ିବ ଆଉ ଏକ ପୃଥିବୀ ?''

ଆଉ କିଛି ଦିନ ତାଙ୍କର ଭାରତ ରହଣିକୁ ବଢ଼ାଇବାର ଅନୁରୋଧକୁ ମଧ୍ୟ ସେ ଠୁକୁରାଇ ଦେଇଥିଲେ ।

ରାସ୍ତାର ଦୁଇ ପାର୍ଶ୍ୱରେ ଦୂର ଦିଗ୍‌ବଳୟର ଧାର ଛୁଇଁଥିବା ସବୁଜ ଧାନକ୍ଷେତ ଆଡ଼େ ଏକ ଫାଙ୍କା ଉଦାସ ଚକ୍ଷୁରେ ଚାହିଁଥିଲେ କ୍ରିଷ୍ଟେନ । ଧାନବିଲର ମଝିରେ ଠିଆ ହୋଇଥିଲେ ବିକ୍ଷିପ୍ତ ଭାବେ କେତୋଟି ତାଳଗଛ । ସେମାନେ ତାଙ୍କର ବରଡ଼ା ପତ୍ରର ହାତକୁ ହଲାଇ ବୋଧେ କହୁଥିଲେ—''ସାରା, ତମେ ଯାଅନି । ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣର ସମାହାରରେ ସୃଷ୍ଟିହୁଏ ଶବ୍ଦ । ତାଳ ଓ ଲୟର ମିଳନରେ ସୃଷ୍ଟି ହୁଏ ଛନ୍ଦ । ପୁରୁଷ ଓ ପ୍ରକୃତିର ମିଳନରେ ସୃଷ୍ଟି ହୁଏ ଭବିଷ୍ୟ । ସେହି ସ୍ୱପ୍ନକୁ ସାର୍ଥକ କରିବା ପାଇଁ ଲୋଡ଼ା କ୍ରିଷ୍ଟେନ ଓ ତୁମର ମିଳିତ ଉଦ୍ୟମ । ତମେ ଏଠି ରହିଯାଅ ।''

ଗାଡ଼ି ଆଗକୁ ଆଗକୁ ମାଡ଼ିଚାଲିଥିଲା ।

କ୍ରିଷ୍ଟେନଙ୍କ ମନରେ ଅଜଣା ଆଶଙ୍କା । ପଛକୁ ଫେରି ନ ଚାହିଁ ଆଗକୁ ଆଗକୁ ମାଡ଼ି ଯାଉଥିବା ଲୋକମାନଙ୍କୁ ସଦାସର୍ବଦା ଭୟ ତାଙ୍କର । ସାରା ବଡ଼ ସେଣ୍ଟିମେଣ୍ଟାଲ । ବଡ଼ ସମ୍ବେଦନଶୀଳ ତାଙ୍କର ସ୍ନାୟୁ ଓ ତନ୍ତ୍ରୀଗୁଡ଼ିକ । କେତେବେଳେ କ'ଣ ସେ କରିବସିବେ, କହି ହେବନି ।

ସିକ୍ୟୁରିଟି ଚେକଗେଟ୍‌ରେ ସେ ସାରାଙ୍କ ଗଣ୍ଡଦେଶରେ ଚୁମାଟିଏ ଆଙ୍କି କେବଳ ଗୋଟିଏ ପଂକ୍ତି ହିଁ କହି ପାରିଥିଲେ—''ଆଇ ଉଇଲ ମିସ୍ ୟୁ ସାରା ।''

ଲାରା ଓ ପିଟରକୁ କୋଳକୁ ଟେକି ତାଙ୍କର ମସ୍ତକରେ ଗୋଟିଏ ଗୋଟିଏ ଚୁମା ଦେଇ ବିଦାୟ ଦେଇଥିଲେ ।

ସେ ଦିନ ସାରା ସେ ଆଉ କୁଆଡ଼େ ଗଲେନି କିମ୍ବା କୌଣସି କାମ କଲେନି ।

ନିଜର ପ୍ରକୋଷ୍ଠ ଭିତରେ କେବଳ ଶୋଇ ରହିଲେ । ଶୋଇଲେ ବା ନିଦ ଆସେ କେଉଁଠୁ ? ଭାୟୋଲିନ୍ ବଜାଇବା ପାଇଁ ମଧ୍ୟ ମନ ବଳିଲାନି ।

ସାରାଙ୍କ ଆସିବାର ଖବର ପାଇ କେତେ କ'ଣ ଯୋଜନା ସେ କରିନଥିଲେ । ଭାବିଥିଲେ ପାନ୍ଥନିବାସରେ ରାତ୍ରି ଯାପନ ନ କରି ଦିନେ ଚିଲିକା ବକ୍ଷରେ ପାଲଟଣା ନୌକାରେ ରାତ୍ରିଯାପନ କରିଥାନ୍ତେ । ସେଇଠି ଶୁଣିଥାନ୍ତେ ଝାଉଁବଣର ସନସନ ସ୍ୱନ । ଶୁଣିଥାନ୍ତେ ନୀଳ ବୀଚିମାଳାର ଅଶାନ୍ତ ଗର୍ଜନ । ସକାଳୁ ଉଠି ବାଲି ଉପରେ ନାଲି କଙ୍କଡ଼ାଙ୍କ ସହ ଦୌଡ଼ ପ୍ରତିଯୋଗିତା କରିଥାନ୍ତେ । ପୁତ୍ର କନ୍ୟାଙ୍କ ସହ ଗୁଡକଂକ କ୍ରୀଡ଼ାରେ ମାତିଥାନ୍ତେ । ଜୀବନ ଓ ଯୌବନର ଜୟଗାନ କରିଥାନ୍ତେ ।

ତାଙ୍କର ସବୁ କଳ୍ପନା କଳ୍ପନାରେ ରହିଗଲା ।

ସନ୍ଧ୍ୟାବେଳକୁ କ୍ରିଷ୍ଟେନ ବାଲକୋନିରେ ବସିଗଲେ ଡ୍ରିଂକ୍ସ କରିବା ପାଇଁ ।

ପ୍ରଚୁର ଡ୍ରିଂକସ ପରେ ସେ କେତେବେଳେ ବସି ବସି ଶୋଇଯାଇଥିଲେ, ତାଙ୍କ ଜ୍ଞାନ ନଥିଲା ।

ବିୟରର ଭାବିଲା–ଏ ଚଢ଼େଇ ପଛରେ ପାଗଳ ହୋଇଥିବା ସାହେବଟିର ବୋଧେ ଆଜି ମନ ଭଲ ନାହିଁ । ଡ୍ରିଂକସ ନେଲେ ଦୁଇ ପେଗ୍‌ରୁ ଅଧିକ ନିଏନି । ଆଜି କ'ଣ ଏତେ ପିଇ ସାରିଲାଣି । ପୁଣି ଖାଇବା ଅର୍ଡର ନ ଦେଇ ଶୋଇଗଲାଣି ।

–"ସାହେବ, ଖାନାର ଅର୍ଡର ଦିଅନ୍ତୁ" ତାଙ୍କୁ ସେ ଚେତାଇଲା ।

–"ନାଇଁ" କହି ହାତ ହଲାଇ ସେ ପୁଣି ଘୁମାଇ ପଡ଼ିଲେ ।

ମଧ୍ୟରାତ୍ରିର ନିସ୍ତବ୍ଧ ପ୍ରହରରେ ତାଙ୍କ ଦ୍ୱାରରେ ଖଟଖଟ ଶବ୍ଦ ହେଲା । ତାଙ୍କ ନିଦ ଭାଙ୍ଗିଗଲା । ବାହାରେ ଠିଆହୋଇଥିଲା ଅପରିଚିତ ଲୋକଟିଏ ।

–"ସାହେବ ।"

–"ଇୟେସ୍ ।"

–"ସାହେବ, ହେଃ ହେଃ ହେଃ... ।" କିଛି କହିବାକୁ ଚେଷ୍ଟାକରି ସେ ସାହସ ସଞ୍ଚୟ କରି ପାରୁନଥିଲା ।

–"ହ୍ୱାଟ୍ ?" ଗର୍ଜିଉଠିଲେ କ୍ରିଷ୍ଟେନ ।

—''ସାହେବ, ହୁକୁମ ହେଲେ ...

—''ଇୟେସ... ।''

ତା'ପରେ ସେ ଢରିକାଗଜରେ ଗୁଡ଼ାଇ ଆଣିଥିବା ଆଲବମ୍‌ଟିଏ ତାଙ୍କ ସାମନାରେ ଖୋଲିକରି ଦେଖାଇଲା । ସମ୍ପୂର୍ଣ୍ଣ ନିଦ ଛାଡ଼ି ନ ଥିବାରୁ କ୍ରିଷ୍ଟେନ ଆଲବମ୍‌ଟା ଦେବାର ଉଦ୍ଦେଶ୍ୟ ହଠାତ୍ ବୁଝି ପାରିନଥିଲେ ।

ଆଲବମ୍‌ର ଗୋଟିଏ ପୃଷ୍ଠା ଖୋଲିଲେ ସେ । ସେଥିରେ ଥିଲା କ୍ଷୀଣକାୟା ଏକ ବାଳିକାର ଆବକ୍ଷ ଚିତ୍ରଟିଏ । ଶ୍ୟାମଳ ମୁହଁରେ ଏକ ମନ ଖୋଲା ହସ । ଦିଶୁଥିଲା ସାବୁଜା ତାଳପତ୍ର ଭିତରେ ଜବା ଫୁଲଟିଏ ପରି । ଦୁଃଖ ଓ ଦୈନ୍ୟରେ ଧଉଳା ହୋଇଥିବା କଙ୍କାଳସାର ଶରୀରରୁ ସ୍ପର୍ଦ୍ଧାର ସହ ମୁଣ୍ଡ ଟେକିଥିଲେ ଅବିକଚ କୁଚ ଦୁଇଟି ।

ଆଉ ଗୋଟିଏ ଫର୍ଦ୍ଦ ଖୋଲିଲେ । କେବଳ ସାୟା ଓ କାଞ୍ଚୁଲାରେ ଓଦାସରସର ହୋଇ ଠିଆ ହୋଇଥିଲା କିଶୋରୀଟିଏ । ସମ୍ଭବତଃ ଚିଲିକାର ଧୀବର-କନ୍ୟା । ପାଣି ଟପଟପ ହୋଇ ପଡୁଥିଲା ତା'ର ଚୂର୍ଣ୍ଣକୁନ୍ତଳରୁ ।

—''ସାହେବ, ଦର୍କାର ?'' ଉତ୍ସାହିତ ହୋଇ ପଚାରିଲା ସେ ।

ପ୍ରକୃତିସ୍ଥ ହେଲେ କ୍ରିଷ୍ଟେନ । ତା'ପରେ ଗର୍ଜ୍ଜଉଠି କହିଲେ—''ଗେଟ୍ ଆଉଟ୍, ଆଇ ସେ ଗେଟ୍ ଆଉଟ୍ ।''

ଲେଭେଲ କ୍ରସିଂ ଗେଟ୍ ପାଖରୁ ମଝିରେ ମଝିରେ ଟ୍ରେନ୍‌ର ଲମ୍ବା ସିଟି ଶୁଭୁଥିଲା । ବତ୍ସହରା ଗୋ ମାତାର ହମ୍ବା ରଡ଼ି ପରି ଥିଲା ସେ ଶବ୍ଦ । ଆଉ କିଛି ଶବ୍ଦ ନ ଥିଲା ଚରାଚରରେ । ଏପରିକି ପାର୍ଶ୍ୱବର୍ତ୍ତୀ ଗଛମାନଙ୍କରେ କାଉ କୋଇଲି ବି ଶୋଇ ଯାଇଥିଲେ ନିଘୋଡ଼ ନିଦରେ । କିନ୍ତୁ ତାଙ୍କୁ ଆଉ ନିଦ ଆସିଲା ନାହିଁ । ମନେ ମନେ କହିଲେ—ଯେତେ ଯେତେ ପର୍ଯ୍ୟଟନସ୍ଥଳ ଗୋଟିଏ ଗୋଟିଏ ଦେହବ୍ୟାପାରର ପେଣ୍ଠସ୍ଥଳ ହୋଇଗଲାଣି । ତାଙ୍କ ମନରେ ଦୁଃଖ ହେଲା ।

ଶୋଇବା ପାଇଁ ତାଙ୍କୁ ସ୍ଲିପିଂ ପିଲର ସହାୟତା ନେବାକୁ ପଡ଼ିଲା ।

ରାତ୍ରିର ନିଭୃତ ପ୍ରହରମାନଙ୍କରେ ଏବେ ତାଙ୍କୁ ତୁହାଇ ତୁହାଇ ମନେ ପଡ଼ନ୍ତି ସାରା । ଓଡ଼ିଶାରୁ ଫେରି କିଭଳି ଭାବେ କାନାଡ଼ାରେ ପହଞ୍ଚିଲେ ସେ ବିଷୟରେ

କୌଣସି ଖବର ଦେଇ ନାହାନ୍ତି ସେ । ନିଜେ କେତେଥର ଫୋନ୍ କରିଥିଲେ । ସେପଟୁ ପ୍ରତ୍ୟୁତ୍ତର ନଥିଲା ।

କେମିତି ଅଛନ୍ତି ଲାରା ଓ ପିଟର ? ଯେଉଁ ସାତଦିନ ସେ ଦୁହେଁ ଚିଲିକାରେ ଥିଲେ, ଦଣ୍ଡେ ହେଲେ କରଛଡ଼ା ଦେଇନାହାନ୍ତି । ନିଭୃତ ପ୍ରହରଗୁଡ଼ିକରେ ସେ ଦୁହେଁ ବି ଖୁବ୍ ମନେ ପଡ଼ନ୍ତି ।

ରାତ୍ରିର ଘନ ଅନ୍ଧକାରରେ ମନେ ପଡ଼େ ପ୍ରିୟ କାନାଡ଼ା । ସ୍ୱପ୍ନରେ ତାଙ୍କୁ ଯେମିତି କେହି ଶହଶହ ହାତ ଠାରି କରି ଡାକନ୍ତି । ସେସବୁ ବୋଧହୁଏ ଟରୋଣ୍ଟୋର ନଭଶ୍ଚୁମ୍ବୀ ଅଟ୍ଟାଳିକାମାନଙ୍କର ହାତ । ସେ ଅଟ୍ଟାଳିକା ଗୁଡ଼ିକ ଡାଉନଟାଉନର ହ୍ରଦକୂଳରେ ଠିଆ ହୋଇଥାନ୍ତି ସୌନ୍ଦର୍ଯ୍ୟ ସ୍ପର୍ଦ୍ଧାରେ ଯୋଗ ଦେଇଥିବା ଗୋଟିଏ ଗୋଟିଏ ସୁନ୍ଦରୀ ପରି । ଖୁବ୍ ମନେ ପଡ଼େ ଟରୋଣ୍ଟୋର ଚେସ୍‌ବୋର୍ଡର ଲାଇନ ପରି ଯାଇଥିବା ସଳଖ ସୁନ୍ଦର ରାସ୍ତାଘାଟ । ସେହି ରାସ୍ତାରେ ବୁଲିବୁଲି ସେ ବିତାଇ ଦେଇଛନ୍ତି ତାଙ୍କର ସବୁଜ ବର୍ଷଗୁଡ଼ିକ ।

ତାଙ୍କୁ ବେଶୀ ଯନ୍ତ୍ରଣା ଦିଏ ସାରାଙ୍କର ଅଭାବିତ ପରିବର୍ତ୍ତନ । ତାଙ୍କର ଆଶ୍ଚର୍ଯ୍ୟଜନକ ନୀରବତା ଓ ଅନ୍ୟମନସ୍କତା । ସତରେ କ'ଣ ସବୁ ଭୁଲ ତାଙ୍କ ନିଜର ? ସେ କ'ଣ ତାଙ୍କୁ ଜାଣି ଜାଣି ଅବଜ୍ଞା କରିଛନ୍ତି ଏବଂ ମନରେ ଆଘାତ ଦେଇଛନ୍ତି ?

ତାଙ୍କ ଜ୍ଞାତସାରରେ ସେ କେବେ ସାରାଙ୍କୁ ଅବଜ୍ଞା ବା ଅବହେଳା କରିନାହାନ୍ତି । ଅବହେଳା ହୋଇଥିଲେ ତାଙ୍କ ଭିତରେ ଲେଖକୀୟ ସତ୍ତା ସେଥିପାଇଁ ଦାୟୀ ।

ଲେଖକ ଓ ଭାବୁକମାନଙ୍କ କ୍ଷେତ୍ରରେ ଏ ଏକ ଆଶ୍ଚର୍ଯ୍ୟଜନକ ବିରୋଧାଭାସ । ପ୍ରିୟଜନ ପାଖରେ ଥିଲେ ସେ ତାଙ୍କୁ ଅବହେଳା କରନ୍ତି । ସାଧନା ପଥରୁ ବିଚ୍ୟୁତ କରୁଛନ୍ତି ବୋଲି ମନ୍ତବ୍ୟ ଦିଅନ୍ତି । କିନ୍ତୁ ପ୍ରିୟଜନ ଦୂରେଇ ଗଲେ କିଏ ବିରହରେ ଗଜଲ ଗାଏ ତ କିଏ ବେହେଲା ବଜାଏ ।

ରାତ୍ରିର ନିସ୍ତବ୍ଧ ପ୍ରହରଗୁଡ଼ିକୁ ବିତାଇବା ପାଇଁ ଏବେ ସେ ଘଣ୍ଟା ଘଣ୍ଟା ଧରି ବେହେଲା ବଜାନ୍ତି । ମାତ୍ରାଧିକ ଡ୍ରିଙ୍କ୍ସ ନେଲେ ବା ପିଲ୍ ଖାଇଲେ ତାଙ୍କୁ ନିଦ ଆସେ । ସେଥିପାଇଁ ସେ ଏଣିକି ସକାଳୁ ଅନେକ ଡେରିରେ ନିଦରୁ ଉଠନ୍ତି ।

୧୯୭୧ରେ ରାମସର କନ୍‌ଭେନ୍‌ସନର ସ୍ୱାକ୍ଷର କର୍ତ୍ତା ହିସାବରେ ଚିଲିକା ଜଳାଞ୍ଚଳର ସୁରକ୍ଷା ଥିଲା ଭାରତବର୍ଷ ନାଗରିକମାନଙ୍କର ଦାୟିତ୍ୱ । ୧୯୮୭ରେ ଏହା ଏକ ଅଭୟାରଣ୍ୟ ଭାବେ ଘୋଷଣା ହୋଇଥିଲା । କିନ୍ତୁ ଚିଲିକାର ପରିବେଶର ସୁରକ୍ଷା ପାଇଁ କୌଣସି ଆଖିଦୃଶିଆ କାମ ହୋଇଛି ବୋଲି କ୍ରିଷ୍ଟେନଙ୍କର ହୃଦ୍‌ବୋଧ ହେଲାନି । ଚିଲିକାର ବିଭିନ୍ନ ଅଞ୍ଚଳ ସେ ଖୋଜି ବୁଲିଛନ୍ତି । ଚାରିଆଡ଼େ ବୁଢ଼ୀଆଣି ଜାଲପରି ମାଛମରା ଜାଲ ଘେରି ରହିଥିଲା । ଅନେକ ସ୍ଥାନରେ ଚିଙ୍ଗୁଡ଼ି ଚାଷ ପାଇଁ ଘେରିବନ୍ଧ ନିର୍ମିତ ହୋଇଥିଲା ।

ସେଥର ବମ୍ବେ ନାଚୁରାଲ ହିଷ୍ଟ୍ରି ସୋସାଇଟିର ଗବେଷକମାନେ ଚିଲିକା ଆସିଥିଲେ । ସେମାନେ ଚିଲିକାର ବାର୍ଷିକ ପକ୍ଷୀଗଣନା କାର୍ଯ୍ୟକ୍ରମରେ ସାମିଲ ହୋଇଥିଲେ । ତାଙ୍କ ସହ କ୍ରିଷ୍ଟେନ ମଧ୍ୟ ଥିଲେ । ପକ୍ଷୀଗଣନାର ପରିସଂଖ୍ୟାନ ଅନୁସାରେ ସେଦିନ ଥିଲେ ତିନି ଲକ୍ଷ ବିଦେଶୀ ପକ୍ଷୀ । ଏକ ଲକ୍ଷ କୋଡ଼ିଏ ହଜାର ଭାରତୀୟ ପକ୍ଷୀ ଏବଂ ଏକ ଲକ୍ଷ ଦଶ ହଜାର ସ୍ଥାନୀୟ ପକ୍ଷୀ । ସେ ବିଶ୍ୱାସ କରୁନଥିଲେ ଯେ ଦିନେ କୁଆଡ଼େ ଚିଲିକାକୁ ତିରିଶ ଲକ୍ଷ ପକ୍ଷୀ ଆସୁଥିଲେ ।

କିଛିବର୍ଷ ହେଲା ଚିଲିକାର ସର୍ବାଙ୍ଗୀନ ଉନ୍ନୟନ ପାଇଁ ଚିଲିକା-ଉନ୍ନୟନ ସଂସ୍ଥା ପ୍ରତିଷ୍ଠିତ ହୋଇଥିଲା । ସେହି ସଂସ୍ଥା ନଳବଣ ଚାରିପଟେ ବଡ଼ ବଡ଼ ଧଳା ଖୁଣ୍ଟ ପୋତିବା ଛଡ଼ା ଆଉ କ'ଣ କରିଛି, ସେ ଜାଣିନଥିଲେ ।

ଥରେ ତାଙ୍କ କାର୍ଯ୍ୟାଳୟକୁ ଅପରାହ୍ଣରେ ଯାଇଥିଲେ । କୌଣସି ଅଧିକାରୀଙ୍କ ଦର୍ଶନ ମିଳିଲାନି । ବୋଧହୁଏ ସେମାନେ ମଧ୍ୟାହ୍ନ ଭୋଜନ ପରେ ଅପରାହ୍ଣ ଶୟନ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଲାଇବ୍ରେରିରେ ବେଶୀ କିଛି ବହିପତ୍ର ନ ଥିଲା । ସେଠି କି ଗବେଷଣା ଚାଲିଛି ଅଧସ୍ତନ କର୍ମଚାରୀମାନେ ବୁଝାଇ ପାରିଲେ ନାହିଁ କିମ୍ବା ଜାଣି ଜାଣି ବୁଝାଇଲେ ନାହିଁ ।

ଚିଲିକା ଉନ୍ନୟନ ସଂସ୍ଥାର ମୁଖ୍ୟ କାର୍ଯ୍ୟାଳୟର ଲବିରେ ଚିଲିକାର ଏକ ବୃହତ ମାନଚିତ୍ର ଚିତ୍ରିତ ହୋଇଥିଲା । ତା' ପାଖରେ ଏହି ସଂସ୍ଥାର ଯେଉଁ ମୁଖ୍ୟ ଉପଲବ୍ଧି ବର୍ଣ୍ଣିତ ହୋଇଥିଲା ସେଗୁଡ଼ିକ ହେଲା : ସମୁଦ୍ର ମୁହାଁଣ ଓ ନଦୀର ପତନ ସ୍ଥଳମାନଙ୍କରୁ ପଚାଶ ଲକ୍ଷ କିୟୁବିକ ମିଟର ପଟୁମାଟି ନିଷ୍କାସନ କରଯାଇଛି । ଦୁଇଶହ ଧୀବର ଓ ମାଛଚାଷୀଙ୍କୁ ପରିବେଶ ସମ୍ପର୍କରେ ଶିକ୍ଷା ଦିଆଯାଇଛି । ସ୍କୁଲ କଲେଜ ପିଲାଙ୍କୁ ଷ୍ଟଡିଟୁର ମାଧ୍ୟମରେ ପରିବେଶ ସମ୍ପର୍କରେ ସଚେତନ କରାଯାଇଛି । ନଦୀ ଅବବାହିକାମାନଙ୍କରେ ଚାଳିଶ ହଜାର ହେକ୍ଟର ପରିମିତ ଜମିରେ ବୃକ୍ଷରୋପଣ

ହୋଇଛି । ପାଞ୍ଚଟି ସ୍ଥାନରେ ଜେଟ୍ଟୀ ଏବଂ ଦଶଟି ଗ୍ରାମରେ ରାସ୍ତା ନିର୍ମିତ ହୋଇଛି । ପକ୍ଷୀ ରକ୍ଷଣାବେକ୍ଷଣ ପାଇଁ ୱାଚଟାୱାର ନିର୍ମିତ ହୋଇଛି । ଗବେଷଣାଲବ୍ଧ ଜ୍ଞାନ ଯୋଗୁଁ ମାଛ ଓ ଚିଙ୍ଗୁଡ଼ି ଉତ୍ପାଦନ ଦଶଗୁଣ ବୃଦ୍ଧି ପାଇଛି ।

ଫେରିଲା ବେଳେ ସନ୍ଧ୍ୟା ହୋଇ ଯାଇଥିଲା । ରାସ୍ତା କଡ଼ରେ ଧାଡ଼ିଏ ଡାଳ ରଖାଯାଇଥିଲା । ତା' ପଛରେ ପୃଷ୍ଠଦେଶକୁ ଅନାବୃତ କରି ସମ୍ମୁଖ ଭାଗରେ ଶାଢ଼ିପଣତକୁ ଟାଣିଧରି ଅଧୋବଦନରେ ବସିଥିବା ଗ୍ରାମାଙ୍ଗନାଙ୍କୁ ଦେଖି ତାଙ୍କୁ ପ୍ରତେ ହେଲା କୌଣସି ଅଦ୍ଭୁତ ଯୋଗାଭ୍ୟାସ କରୁଥିବା ସନ୍ନ୍ୟାସିନୀଙ୍କ ପରି । ଏ ଏକ ଅଦ୍ଭୁତ ମିନି-କୁମ୍ଭମେଳା ମନେକରି କ୍ୟାମେରା ବାହାର କରିବାକୁ ଉଦ୍ୟତ ହୁଅନ୍ତେ ଏଭଳି ଉତ୍କଟ ଗନ୍ଧ ଉଦ୍‌ଗତ ହେଲା ଯେ ସେ ସେଥିରେ ଠେଲିହୋଇ କଟେଜ ଯାଏ ଚାଲିଆସିଥିଲେ । ସେହି ଦିନଠାରୁ ଆଉ ଦ୍ୱିତୀୟ ଥର ନିଜର ଜ୍ଞାନ-ପିପାସା ମେଣ୍ଟାଇବା ପାଇଁ ସେ ଚିଲିକା ଉନ୍ନୟନ ସଂସ୍ଥାକୁ ଯାଇନାହାନ୍ତି ।

ସେଦିନ ସେ ଶୋଇ ଶୋଇ ଭାବୁଥିଲେ ଯେ, ଭି.ଏସ୍. ନୈପଲ୍ କାହିଁକି ଏ ଦେଶକୁ ଏକ ବିସ୍ତୃତ ଟଏଲେଟ୍ ଭାବେ ଚିତ୍ରଣ କରିଥିଲେ ।

ବାଗ୍‌ଦା ଚିଙ୍ଗୁଡ଼ି ପାଇଁ ଚିଲିକାର ସୁଖ୍ୟାତି ଥିଲା । ସରକାରଙ୍କର ଭ୍ରମାତ୍ମକ ଲିଜନୀତି ଯୋଗୁଁ ପ୍ରଥମେ କିଛି ଲୋକଙ୍କୁ ଚିଙ୍ଗୁଡ଼ି ଚାଷ ପାଇଁ ଉପକୂଳବର୍ତ୍ତୀ ଅଞ୍ଚଳରେ ଅନୁମତି ଦିଆ ଯାଇଥିଲା । କିନ୍ତୁ ଏହି ଚାଷର ମୁନାଫାକୁ ଆଖିରେ ରଖି ଚିଲିକାରେ ମାଫିଆ ଗୋଷ୍ଠୀ ପଶିଲେ । ଆଫ୍ରିକାରେ ଯେଉଁଳି ସୁନା ସନ୍ଧାନ ପାଇଁ ବିଗତ ଶତାବ୍ଦୀମାନଙ୍କରେ ଠେଲାପେଲା ଲାଗିଥିଲା, ସେହିଭଳି ଚିଲିକାକୁ ବ୍ୟାପାରୀମାନେ ଆସିଲେ କଟକରୁ, କଲିକତାରୁ, ବିଶାଖାପାଟଣାରୁ, ବମ୍ବେରୁ । ଶହ ଶହ ଯନ୍ତ୍ରଚାଳିତ ନୌକା ପଇଁତରା ଦେଲେ ଚିଲିକା ବକ୍ଷରେ । ଜହ୍ନରାତିକୁ ତୁଚ୍ଛ କରି ରାତିରେ ଶହ ଶହ ସର୍ଚ୍ଚ ଲାଇଟ୍ ବୁଲିଲା । ଚିଲିକାର ପକ୍ଷୀକୂଳରେ କୋକୁଆ ଭୟ ସୃଷ୍ଟି ହେଲା ।

ସବୁଠାରୁ ବଡ଼ ଭୁଲ ଥିଲା ଟାଟା କମ୍ପାନୀକୁ ସଘନ ଚିଙ୍ଗୁଡ଼ି ଚାଷ ପାଇଁ ଲିଜ୍ ଦେବା ନୀତି । ପ୍ରାୟ ଏକହଜାର ଏକର ଜମିରେ ଟାଟା କମ୍ପାନୀ ବନ୍ଧ ପକାଇ ପୋଖରୀ ତିଆରି କରିବାରେ ଲାଗିଲା । ଶହ ଶହ ଟ୍ରାକ୍ଟରରେ ମାଟି ବୁହାହୋଇ ବନ୍ଧ ନିର୍ମାଣ ହେଲା । ହାଲୋଜେନ୍ ଆଲୁଅରେ ଚିଲିକା ଉଦ୍‌ଭାସିତ ହେଲା । ଚିଲିକାର

ପାରମ୍ପରିକ ମତ୍ସ୍ୟଜୀବୀମାନଙ୍କ ପାଇଁ ଏହା ଏକ ବିପଦ ସୃଷ୍ଟିକଲା । ସେଥିପାଇଁ ସୃଷ୍ଟି ହୋଇଥିଲା 'ଚିଲିକା ବଞ୍ଚାଅ' ଗଣଆନ୍ଦୋଳନ ।

ସରକାର ଟାଟା କମ୍ପାନୀର ଲିଜ୍ ବାତିଲ କଲେ ସିନା ରାଜ୍ୟର କିଛି ନେତା, ବ୍ୟୁରୋକ୍ରାଟମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ଚିଙ୍ଗୁଡ଼ି ଘେରି ଅବ୍ୟାହତ ରହିଲା । 'ଚିଲିକା ବଞ୍ଚାଅ' ଆନ୍ଦୋଳନର କର୍ମକର୍ତ୍ତା ନ୍ୟାୟାଳୟର ଦ୍ୱାରସ୍ଥ ହେଲେ ମଧ୍ୟ ସରକାରୀ କଳର ଉଦାସୀନତା ଯୋଗୁଁ ପରିସ୍ଥିତିରେ କୌଣସି ଉନ୍ନତି ଘଟିଲା ନାହିଁ । ସେଥିପାଇଁ ଚିଲିକାର ଉପକୂଳବର୍ତ୍ତୀ ପ୍ରାୟ ଦେଢ଼ ଶହ ଗାଁର ଦୁଇ ଲକ୍ଷ ମତ୍ସ୍ୟଜୀବୀ ଏକଜୁଟ ହୋଇ ଚିଲିକାର ପରିବେଶ ସୁରକ୍ଷା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ ।

ଏହି ସମୟରେ ରାଜ୍ୟ ସରକାର ଆଉ ଗୋଟିଏ ଭ୍ରମାତ୍ମକ ପଦକ୍ଷେପ ନେଇଥିଲେ । କାଳିଜାଈ ପାହାଡ଼ରେ ଏକ ବିଳାସପୂର୍ଣ୍ଣ ହୋଟେଲ ନିର୍ମାଣ ପାଇଁ ସରକାର ଅନୁମତି ଦେଇଥିଲେ । ଏହି କାଳିଜାଈ ପାହାଡ଼ ସହିତ ମତ୍ସ୍ୟଜୀବୀମାନଙ୍କର ଥିଲା ଆବେଗଗତ ସମ୍ପର୍କ । ତେଣୁ ଆହୁରି ଘନୀଭୂତ ହେଲା ଗଣଆନ୍ଦୋଳନ । ମତ୍ସ୍ୟଜୀବୀମାନେ ଦଳବଦ୍ଧ ହୋଇ ଶହ ଶହ ନୌକାରେ ଯାଇ କାଳିଜାଈର ପୁନର୍ଦଖଲର ସ୍ମାରକୀ ସ୍ୱରୂପ ପତାକା ପୋତିଥିଲେ । ପ୍ରବଳ ଜନମତ ଏବଂ ପ୍ରତିବାଦ ଯୋଗୁଁ ସରକାର କାଳିଜାଈ ପାହାଡ଼ ବିକ୍ରିକୁ ବାତିଲ କରି ଦେଇଥିଲେ ।

ଦିନେ ସକାଳୁ ଡେରିରେ ଉଠି କ୍ରିଷ୍ଟେନ ପାନ୍ଥନିବାସ ନିକଟରେ କୋଳାହଳ ଶୁଣିବାକୁ ପାଇଲେ । ଏହା ଥିଲା ସରକାରଙ୍କର ଉଦାସୀନତା ବିରୋଧରେ ମତ୍ସ୍ୟଜୀବୀମାନଙ୍କର ପ୍ରତ୍ୟକ୍ଷ ଅଭିଯାନ । ପାନ୍ଥନିବାସ ଠାରେ ପ୍ରାୟ ତିନିହଜାର ମତ୍ସ୍ୟଜୀବୀ ତିନିଶହ ନୌକାରେ ଆସି ଶିବିର ପକାଇଥିଲେ । ସେମାନେ ଜାତୀୟ ରାଜପଥକୁ ଅବରୋଧ କରିବା ସଙ୍ଗେ ସଙ୍ଗେ ରେଳ ରୋକୋ କରିଥିଲେ ।

ହାଓଡ଼ା ମାଡ୍ରାସ ମଧ୍ୟରେ ଟ୍ରେନ୍‌ଗୁଡ଼ିକର ଅଖଚକ ବନ୍ଦ ହୋଇଗଲା । ଚିଲିକା ସଂଲଗ୍ନ ରେଳପଥରେ ସକାଳୁ ସକାଳୁ ସିଟିମାରି ଯାଉଥିବା ହାଓଡ଼ା-ମାଡ୍ରାସ ମେଲ୍ ଗାଡ଼ି ଠିଆ ହୋଇଗଲା । ତାକୁ ଦେଖି ରେଳଗାଡ଼ିଟି ଚିଲିକା ଦର୍ଶନ କରିବା ପାଇଁ ଅଟକି ଯାଇଛି, ନା ଚିଲିକା ରେଳଗାଡ଼ିକୁ ଦର୍ଶନ କରିବା ପାଇଁ ଅଟକାଇଛି, ଚିଲିକାର ମୀନ ଓ ମରାଳମାନଙ୍କର ତାହା ଜାଣିବାକୁ ଉପାୟ ନ ଥିଲା । ଆଖପାଖରେ ବସିଥିବା କାଣ୍ଡିବଗମାନେ କଥାବାର୍ତ୍ତା ହେଉଥିଲେ–''ଭୁଆସୁଣୀ ଚିଲିକା ସୁନ୍ଦରୀକୁ ଦେଖି ଏ

କଲକତିଆ ଟ୍ରେନଟି ନିତିପ୍ରତି ସିଟି ମାରୁଥିବା ଯୋଗୁଁ ଏଠିକାର ଲୋକେ ତାକୁ ଦଣ୍ଡ ଦେଇଥିବେ ପରା ।''

କେତେକ ଉତ୍ସାହୀ ପକ୍ଷୀ ଭାଷଣ ଶୁଣିବା ପାଇଁ ଚକ୍‌କର କାଟିଲେ ଆକାଶ ବକ୍ଷରେ । ଆଉ କେତେକ ବୀତସ୍ପୃହ ପକ୍ଷୀ ସେଠୁ ଦୂରକୁ ଚାଲିଯାଇ କଥାଭାଷା ହେଉଥିଲେ–''ଯେ ମଣିଷଙ୍କ ମାମଲା, ଆମେ ସେଥିରେ ଥଣ୍ଟ ପୂରାଇବା କାହିଁକି ଭଲା !''

ଶୋଭାଯାତ୍ରାକାରୀମାନେ ଆସିଥିଲେ ପାରିକୁଦରୁ, ମାଲୁଦରୁ, ପାଲୁରଗଡ଼ରୁ । ସେମାନେ ଆସିଥିଲେ ମାଣିକ ପାଟଣା, ସାନ ପାଟଣା, ବଡ଼ ପାଟଣା, ଆଳୁ ପାଟଣାରୁ । ଅନେକ ଆସିଥିଲେ ଜହ୍ନିକୁଦା, ତାମରାକୁଦା, ସିପକୁଦା, ଢାଗିରୁକୁଦାରୁ । ଆହୁରି କେତେଲୋକ ଆସିଥିଲେ ଭୁଷଣ୍ଡପୁର, ଗଙ୍ଗାଧରପୁର, ମିରଜାପୁର, ମସା ବରହମପୁରରୁ ।

ଅନୁସନ୍ଧିତ୍ସୁ କ୍ରିଷ୍ଟେନ ନିଜର କିଛି ତଥ୍ୟ ସଂଗ୍ରହ କରିବା ପାଇଁ ଜନଗହଳିରେ ସାମିଲ ହେଲେ । ଚିଲିକା ସୁରକ୍ଷା ସମିତିର ଜଣେ ଆତ୍ମ-ନିଯୁକ୍ତ ନେତା ଓଜସ୍ୱିନୀ ଭାଷଣ ଦେଉଥିଲେ–''ଉତ୍କଳ-କମଳା-ବିଳାସ-ଦୀର୍ଘିକା, ମରାଳ-ମାଳିନୀ-ନୀଳାମ୍ବୁ ଚିଲିକା ଆଜି କ୍ରନ୍ଦନରତା । ନୀଳାମ୍ବୁ-ଚିଲିକା ଆଜି ରକ୍ତାମ୍ବୁ-ଚିଲିକାରେ ପରିଣତା । ସବୁ ସୌନ୍ଦର୍ଯ୍ୟର ଗନ୍ତାଘର ଚିଲିକାରାଣୀ ଆଜି ଘୋର ବିପର୍ଯ୍ୟୟ ଆଡ଼କୁ ମାଡ଼ିଚାଲିଛି । ଦ୍ରୁତ ଗତିରେ କ୍ଷୟ ହୋଇ ଚାଲିଛି ତା'ର ଆଖପାଖର ମୃତ୍ତିକା । ପଟୁ ମାଟିରେ ପୋତି ହୋଇ ପଡୁଛି ଏଇ ବିଶାଳକାୟ ହ୍ରଦ । ବାଧାପ୍ରାପ୍ତ ହୋଇଛି ବିଦେଶାଗତ ପକ୍ଷୀଙ୍କ ପର୍ଯ୍ୟଟନ । ଚିଲିକାରେ ରାଜୁତି କରୁଛି ମାଫିଆ । ମତ୍ସ୍ୟଜୀବୀମାନଙ୍କର ଭାସିଯାଇଛି ଦୁନିଆ । ଆକାଶର କୟାଁ ପରି ଚିଲିକାରେ ଚିଙ୍ଗୁଡ଼ି, ଇଲିଶି ଓ କଙ୍କଡ଼ା ଏବେ ହୋଇଛି ସାତସପନ । ଏସବୁ ପାଇଁ ଦାୟୀ କିଏ ?''

ଏ କାବ୍ୟ-କବିତାମୟ ବକ୍ତୃତା ଶୁଣି ସଭାସ୍ଥଳରେ ଥିଲା ଅଖଣ୍ଡ ନିରବତା । ତେଣୁ ନିଜେ ବକ୍ତା ତା'ର ଉତ୍ତର ଦେଲେ । –''ଏସବୁ ପାଇଁ ଦାୟୀ ଆମ ସରକାର । ଏହି ସରକାର ହଜାର ଦିନରେ ହଜାରଟି ଶିଳ୍ପ ପ୍ରତିଷ୍ଠା କରିବ ବୋଲି ନିର୍ବାଚନୀ ପ୍ରତିଶ୍ରୁତି ଦେଇଥିଲା । କୁଆଡ଼େ ଗଲା ଏକ ଲକ୍ଷ ଯୁବକଙ୍କୁ ଚାକିରି ? ଶିଳ୍ପ ନାଆଁରେ ଚିଙ୍ଗୁଡ଼ି-ଶିଳ୍ପ ବସୁଛି । ଲକ୍ଷ ଲକ୍ଷ ମତ୍ସ୍ୟଜୀବୀ ଭାଇଙ୍କ ଭାତ ଥାଳିଆରେ ହାତ ମାରିବା ହିଁ ଏହାର ପରିଣତି । ଏଠି ଯେତେସବୁ ଭାଇମାନେ ବସିଛନ୍ତି, ସମସ୍ତେ ହେବେ ଦାଣ୍ଡର ଭିକାରୀ । ଏହା ଆମେ କସ୍ମିନ୍ କାଳେ କରାଇ ଦେବୁନି । ଏ ଚିଲିକାର ଜଳ

ହାତରେ ଧରି ମୁଁ ଶପଥ ନେଉଛି, ଚିଙ୍ଗୁଡ଼ି ଘେରି ଉଚ୍ଛେଦ ନ ହେଲେ ରକ୍ତର ନଦୀ ବୁହାଇ ଦେବୁ ଏ ରାଜପଥରେ ।'' ହାତରେ ସେ ବୋତଲରେ ବୋତଲେ ପାଣି ଧରିଥିଲେ ।

ଚାରିଆଡ଼ୁ କରତାଳିର ବର୍ଷା ହେଲା । ଆଉକିଛି ସ୍ଥାନୀୟ ନେତା ହାତ ଟେକି ପବନକୁ ଖୁନ୍ଦା ମାରି କ'ଣ କହୁଥିଲେ ତାହା କେହି ଶୁଣୁନଥିଲେ । ସଭାସ୍ଥଳରେ ଅନେକ ଶ୍ରୋତା ସେହିଭଳି ମୁଷ୍ଟିବନ୍ଧ କରି ସେମାନଙ୍କର ଅନୁକରଣ କରୁଥିଲେ ।

ଲୋକମାନେ ସଭାସ୍ଥଳ ଛାଡ଼ି ଯେଝା ଯେଝା ଘରକୁ ଗଲେ । ସାଲିସ କରିବା ପାଇଁ ଆସିଥିବା ସରକାରୀ ପ୍ରତିନିଧିଙ୍କ ସହ ନେତା ଫେରିଲେ ଭୁବନେଶ୍ୱର । ପାଖ ଗଛମାନଙ୍କରେ ବସିଥିବା ବଗମାନେ ଡେଣା ଫଡ଼ଫଡ଼ କରି ଉଡ଼ିଗଲେ ଚଢ଼େଇହଗା ପର୍ବତକୁ ।

କ୍ରିଷ୍ଟେନ ତାଙ୍କ ଭିଡ଼ିଓ କ୍ୟାମେରାରେ ସଭାସ୍ଥଳର ଜନସମାଗମର ଫଟୋ ଡୋଳିଥିଲେ । ସେ ବାଲୁଗାଁ ପର୍ଯ୍ୟନ୍ତ ଚାଲି ଚାଲି ଗଲେ । ରାସ୍ତା ଦୁଇ କଡ଼ରେ ଧାଡ଼ି ଧାଡ଼ି କରି ଛିଡ଼ା ହୋଇଥିବା ଖଜୁରୀ ଗଛ ତାଙ୍କୁ ଦିଶୁଥିଲେ ଜଟାଧାରୀ ବଲ୍କଳଧାରୀ ମହିମା ଭକ୍ତଙ୍କ ପରି ।

ବାଲୁଗାଁର ରାଜମାର୍ଗରେ ଧାଡ଼ି ଧାଡ଼ି ଦୋକାନସବୁ ରାସ୍ତା କଡ଼କୁ ହାମୁଡ଼ି ପଡ଼ିଥିଲେ । କେଉଁଠି ଲୁଗା ଦୋକାନ, କେଉଁଠି ଡେଜରାତି ଦୋକାନ, କେଉଁଠି ମନୋହରୀ ଦୋକାନ ତ କେଉଁଠି ଫଳ ଦୋକାନ । ପନିପରିବା ଦୋକାନୀମାନେ ରାସ୍ତା ଉପରେ ପସରା ମେଲାଇ ବସିଯାଇଥିଲେ । ତାଙ୍କ ଚାରିପଟେ ବୁଲା ଗାଈ ଗୋରୁ ଲଙ୍ଗର ପଙ୍ଗର ହେଉଥିଲେ । ସାହୁ ଅପ୍ଟିକାଲ, ମା' ବିରଜାଈ ଷ୍ଟୁଡିଓ, ବିନାୟକ ସେଲୁନ୍, ପୃଷ୍ଟି ଲୁଗା ଦୋକାନ, କାଳିଜାଈ ଟେଷ୍ଟ ହାଉସ୍ ଏସବୁ ସାଇନ୍‌ବୋର୍ଡ ପଢ଼ି ପଢ଼ି ସେ ମାଛହାଟ ଆଡ଼କୁ ଗଲେ । ମାଛ ହାଟରେ କିଛି ସ୍ତ୍ରୀଲୋକ ସମୁଦ୍ରମାଛ ବିକୁଥିଲେ ।

ଚିଲିକା ଘାଟରେ ଶହ ଶହ ଡଙ୍ଗା ଲଙ୍ଗର ପକାଇଥିଲେ । ସେଠି ସାଇନ୍‌ବୋର୍ଡରେ ଇଂରାଜୀରେ ଲେଖା ଥିଲା—

''ଚିଲିକା ଏକ ସ୍ୱର୍ଗ । ସର୍ବଦା ନିଅ ତା'ର ଯତ୍ନ ।

କାଳିଜାଈ ଚିଲିକାର ଅଧିଷ୍ଠାତ୍ରୀ ଦେବୀ । ବିପଦରେ ଡାକିଲେ ଓ କରନ୍ତି ।

ଚିଲିକାର ସୁକୁମାର ଶିଶୁମାର । ତାଙ୍କର ସୁରକ୍ଷା କର୍ତ୍ତବ୍ୟ ଆମର ।''

ଘାଟରୁ ଫେରିଲା ବେଳେ ତାଙ୍କର ଆଖି ପଡ଼ିଲା ଏକ ହୋଟେଲ ଉପରେ ।

ନାଁ ମା' ତାମରୋଇ ହୋଟେଲ । ଚିଲିକାରେ ରାତ୍ରିଯାପନ କରୁଥିବା ଧୀବରମାନଙ୍କୁ ରକ୍ଷା କରନ୍ତି ମା' ତାମରୋଇ । ସେହି ଠାକୁରାଣୀଙ୍କ ନାଁରେ ଏଇ ହୋଟେଲ ।

ସେଠି ଆଗରେ କାଚ ଆଲମିରା ଭିତରୁ ଛେନାପୋଡ଼, ରସଗୋଲା, ଛେନା ତାଡ଼ିଆ, ଛେନା ଗଜା ପ୍ରଭୃତି ବିଭିନ୍ନ ମିଷ୍ଟାନ୍ନ ପଦାର୍ଥ ଲୋଭନୀୟ ଭାବେ ସଜା ହୋଇଥିଲା ।

ହୋଟେଲର ସାମନାରେ ଚା'ର ଷ୍ଟୋଭ ଜଳୁଥିଲା । ଚା' ପିଇ ଗୁଳିଖଟି କରିବା ପାଇଁ ଦିନସାରା ଗ୍ରାହକଙ୍କର ଅଭାବ ନଥାଏ । ଭିତରେ ପ୍ରାୟ ସାତ ଆଠଟି ବେଞ୍ଚ ଓ ଡେସ୍କ । ଜଳଖିଆ ଓ ମିଲ ଖାଇବା ପାଇଁ ଏଠି ଆୟୋଜନ । ଆଲମିରାକୁ ଲାଗି ମାଲିକର କାଉଣ୍ଟର । ଚେୟାରଟିଏ । ଟେବୁଲଟିଏ । ଟେବୁଲ ଉପରେ କ୍ୟାସ ବାକ୍ସ । ସେଇଠି ବସି ମାଲିକ ଚାରିଆଡ଼କୁ ଲକ୍ଷ୍ୟ କରିପାରେ ।

ନର୍ଦ୍ଦମାରେ କୁକୁଡ଼ା ପରମାନଙ୍କ ମଧ୍ୟରେ ନୀଳ ସବୁଜ ପରଗୁଡ଼ିକ ଦେଖି ତାଙ୍କ ମନରେ ସନ୍ଦେହ ସୃଷ୍ଟି ହେଲା । ଏ କେଉଁ ପକ୍ଷୀର ପର ହୋଇପାରେ ? ସଂନ୍ଦେହ ମୋଚନ ପାଇଁ ସେ ହୋଟେଲ ଭିତରକୁ ଗଲେ । ଗୋଟିଏ ଚେୟାରରେ ବସି ଫିସ୍-ଫ୍ରାଏର ଅର୍ଡର ଦେଲେ । ଲୋକମାନଙ୍କୁ କି ମାଂସ ପରିବେଷଣ ହେଉଛି ଜାଣିବାକୁ ଚେଷ୍ଟା କଲେ ।

ଦୁଇଟି ଗେଣ୍ଡୀ ବତକ ବନ୍ଧା ହୋଇ ପଡ଼ିଥିଲେ କୋଇଲା ରଖା ହୋଇଥିବା ଭାଡ଼ି ତଳେ । ସକାଳୁ ସକାଳୁ ଫାଶ ପକାଇ ଧରା ଯାଇଛି ବୋଲି ମନେ ହେଉଥିଲା । ପକ୍ଷୀ ଦୁଇଟି ସଜଳ ନୟନରେ ଚାହିଁଥିଲେ କ୍ରିଷ୍ଟେନଙ୍କ ଆଡ଼େ । ସେ ସଙ୍ଗେ ସଙ୍ଗେ ଭିଡ଼ିଓ କ୍ୟାମେରାରେ ସେମାନଙ୍କର ଫଟୋ ନେଲେ । କିଚେନ୍‌ରେ ରୋଷେୟାମାନେ ଚିନ୍ତାଶୂନ୍ୟ ହୋଇ କାମରେ ଲାଗିଥିଲେ ।

ସେମାନଙ୍କ ମଧ୍ୟରୁ ଜଣେ ହସି ହସି ପଚାରିଲା—''ଜାହାଜ ଖାଇବେ, ସାହେବ ?''

ଇତ୍ୟବସରରେ ହୋଟେଲ ମାଲିକ ସେଠି ପହଞ୍ଚି ଯାଇଥିଲା । ଜଣେ ଅପରିଚିତ ବିଦେଶୀକୁ ଗେଣ୍ଡୀବତକର ଫଟୋ ନେଉଥିବାର ଦେଖି ସେ ପ୍ରମାଦ ଗଣିଲା । ବାହାରେ ବୁଲୁଥିବା ନିଜର ପାଳିତ ଗୁଣ୍ଡାଙ୍କୁ ଆସିବା ପାଇଁ ଡାକପକାଇଲା । ସେମାନେ ଘେରିଯାଇଥିଲେ କ୍ରିଷ୍ଟେନଙ୍କୁ ।

—''ଭିଡ଼ିଓ କ୍ୟାମେରାଟା ଆମକୁ ଦେଇଦିଅ ସାହେବ ।''—ସେମାନେ ଚିଲାଉଥିଲେ ।

ସେମାନେ ତାଙ୍କୁ ମୁଥ ମାରି ଲହୁଲୁହାଣ କରିଥିଲେ ଏବଂ କ୍ୟାମେରାଟିକୁ ଛଡ଼ାଇ ନେବାକୁ ଚେଷ୍ଟା କରୁଥିବା ବେଳେ କ୍ରିଷ୍ଟେନ ନିଜ ପକେଟରେ ରଖିଥିବା ପିସ୍ତଲ ବାହାର କରି ତାଙ୍କ ଆଖି ସାମନାରେ ବୁଲାଇଲେ ।

–''ଷ୍ଟପ୍ ଦିସ୍ ନନ୍‌ସେନ୍ସ । ଅର ଆଇ ଫାୟାର ।''

ବରଫ ଭଳି ଥଣ୍ଡା ହୋଇଯାଇଥିଲା ହୋଟେଲ ମାଲିକ ଓ ତାଙ୍କ ଭଡ଼ାଟିଆ ଗୁଣ୍ଡାଙ୍କ ଶରୀର । ସେମାନେ ଷ୍ଟାଚ୍ୟୁ ପରି ହାତ ଟେକି ଠିଆ ହୋଇଗଲେ । ଧୀରେ ଧୀରେ ସେ ସ୍ଥାନରୁ ଅନ୍ତର୍ହିତ ହୋଇ କ୍ରିଷ୍ଟେନ ବସିଲେ ଗୋଟିଏ ଟାକ୍ସିରେ ।

ନିଜ ପ୍ରକୋଷ୍ଠରେ ପ୍ରବେଶ କରି ସେ ଭାବୁଥିଲେ, ଏ ହ୍ରଦକୁ ଅଭୟାରଣ୍ୟ ଭାବେ ଘୋଷଣା କରାଯାଇଛି କାହିଁ କୋଡ଼ିଏ ବର୍ଷ ତଳେ । ପକ୍ଷୀ ଶିକାର ବନ୍ଦ ହୋଇଛି କେବଳ କାଗଜକଲମରେ । କିନ୍ତୁ ଦିନ ଦ୍ୱିପ୍ରହରେ ବିଚ ବଜାରରେ ଚାଲିଛି ଏ ଅବୈଧ କାରବାର । ହୋଟେଲରେ ଘଟିଥିବା ଘଟଣାକୁ ପୁଲିସରେ ଦେଇ ବିଶେଷ କିଛି ଲାଭ ହେବ ନାହିଁ ବୋଲି ସେ ମନେକଲେ । ଏଥିପାଇଁ ଆବଶ୍ୟକ ସାଧାରଣ ଜନତାଙ୍କ ଭିତରେ ସଚେତନତା ସୃଷ୍ଟି କରାଇବା । ସେମାନେ ସଂରକ୍ଷିତ ପକ୍ଷୀମାନଙ୍କର ମାଂସ ବର୍ଜନ କଲେ ଏ ଅବୈଧ ବ୍ୟାପାର ବନ୍ଦ ହେବ । ସେଥିପାଇଁ ସେ ବିଭିନ୍ନ ସଂବାଦପତ୍ର ଓ ପତ୍ରପତ୍ରିକାକୁ ନିଜର ସୁଚିନ୍ତିତ ମତାମତ ପଠାଇଲେ ।

ମତ୍ସ୍ୟଜୀବୀ ଓ ସରକାରଙ୍କ ମଧ୍ୟରେ ବୁଝାମଣା ନିଷ୍ଫଳ ହେଲା । ମତ୍ସ୍ୟଜୀବୀଙ୍କ ଭୁବନେଶ୍ୱରିଆ ନେତାଙ୍କ ଆଉ ଦର୍ଶନ ମିଳିଲା ନାହିଁ । ବୋଧହୁଏ ଚିଙ୍ଗୁଡ଼ି ଘେରିମାନଙ୍କ ମାଲିକଙ୍କ ସହ ତାଙ୍କର ବୁଝାମଣା ହୋଇଗଲା । ତେଣୁ ମତ୍ସ୍ୟଜୀବୀମାନେ 'କର ବା ମର' ଏହି ଶପଥ ନେଇ ଚିଙ୍ଗୁଡ଼ି ଘେରିଗୁଡ଼ିକୁ ନିଜେ ଭାଙ୍ଗିଲେ ।

ଏହି ଘେରି ଭଙ୍ଗାର ପ୍ରଥମ ପର୍ଯ୍ୟାୟ ପରେ ମତ୍ସ୍ୟଜୀବୀମାନେ ସୋରଣଗ୍ରାମ ଠାରେ ନୌଶିବିର ପକାଇଥିଲେ ଏବଂ ପରବର୍ତ୍ତୀ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରୁଥିଲେ । ଏହି ସମୟରେ ଅଚାନକ ସେମାନଙ୍କ ଉପରେ ଚଢ଼ଉ ହୋଇଥିଲା । ସେମାନଙ୍କର ନେତାମାନଙ୍କୁ ଗିରଫ କରି ସଶସ୍ତ୍ର ପୋଲିସ ପୋଲିସ୍‌ଭ୍ୟାନ୍‌ରେ ଉଠାଇ ନେଲେ । ଏହି ଖବର ଦାବାଗ୍ନି ପରି ଆଖପାଖ ଗାଁରେ ପ୍ରସାରିତ ହୋଇଯିବାରୁ ପୋଲିସମାନଙ୍କୁ ଆବାଳ-ବୃଦ୍ଧ-ବନିତା ପଥରୋଧ କରିଥଲେ । ଶେଷରେ, ଗୁଳିକାଣ୍ଡ ଚାଲିଲା । ଏହି

ଗୁଳିକାଣ୍ଡରେ ତିନିଜଣ ପୁରୁଷ ଓ ଜଣେ ମହିଳା ପ୍ରାଣ ହରାଇଥିଲେ । ଏହା ପରେ ମତ୍ସ୍ୟଜୀବୀମାନେ ବିଧାନସଭା ଘେରାଉ କରିଥିଲେ ।

ଏହି ଗୁଳିକାଣ୍ଡ ପରେ ପ୍ରଶାସନର ଆଖି ଖୋଲିଲା । ଅବୈଧ ଘେରି ଗୁଡ଼ିକ ଭାଙ୍ଗି ଦିଆଗଲା । ମତ୍ସ୍ୟଜୀବୀଙ୍କ ବିଜୟ ହେଲା ।

କ୍ରିଷ୍ଟେନ ଅନୁସନ୍ଧାନ କରି ଜାଣିଲେ ଯେ ଚିଲିକାରେ ମାଛମରା ମାଲିକାନାକୁ ନେଇ ବିବାଦ ନୂଆ ନୁହେଁ । ଆଗରୁ କେତେଥର ସଂଘର୍ଷ ଓ ରକ୍ତପାତ ଘଟିଛି । ୧୯୮୦ ମସିହାରେ ମତ୍ସ୍ୟଜୀବୀମାନଙ୍କ ମଧ୍ୟରେ ଆଳୁପାଟଣା ଠାରେ ଏକ ବଡ଼ଧରଣର ସଂଘର୍ଷ ଘଟିଥିଲା । ଗୋଟିଏ ପଟେ ଆଳୁପାଟଣାର ଖଟିଆ ଗ୍ରାମ, ଅନ୍ୟ ପଟେ ସାନପାଟଣା, ମିରଜାପୁର, ଗବକୁଣ୍ଡ ପ୍ରଭୃତି ଅନ୍ୟ ଆଠଖଣ୍ଡ ଗ୍ରାମ ମଧ୍ୟରେ ଚଉବାବା ନାଳିରେ ଖନ୍ଦା ବସାଇବାକୁ କେନ୍ଦ୍ର କରି ଆକ୍ରମଣ ଓ ପ୍ରତିଆକ୍ରମଣରେ ଚାରିଜଣଙ୍କ ମୃତ୍ୟୁ ହୋଇଥିଲା ।

୧୯୯୦ରେ ଚିଲିକା ପାର୍ଶ୍ୱବର୍ତ୍ତୀ ବୟାଳିଶି ଖଣ୍ଡ ଗ୍ରାମର ଅଣମତ୍ସ୍ୟଜୀବୀମାନେ କୁମାରପୁର ଗାଁର କଣ୍ଡରା ମତ୍ସଜୀବୀଙ୍କ ପାଞ୍ଚଶହ ବଖରା ଘର ଜାଳିପୋଡ଼ି ଧ୍ୱଂସ କରିଦେଇଥିଲେ ।

ମାଛ ଶିକାର ପାଇଁ ଠେଲାପେଲା ଚିଲିକା ପାଇଁ କାଳ ହୋଇଛି । ଅତ୍ୟଧିକ ଲୋକ ଚିଲିକା ଭିତରକୁ ନିତିପ୍ରତି ପଶିଲେ ଏହା ପକ୍ଷୀଜଗତ ପାଇଁ ମଧ୍ୟ କାଳ ହେବ ବୋଲି ସେ ବିଭିନ୍ନ ସମ୍ବାଦପତ୍ରରେ ଲେଖିଲେ ।

ଏବେ ନିଭୃତ ପ୍ରହରମାନଙ୍କରେ କଟେଜରେ ଶୋଇ ଶୋଇ ସେ ଦେଖନ୍ତି ତାଙ୍କର ସ୍ୱପ୍ନର ଚିଲିକାକୁ । ସେଇ ଚିଲିକା ହେବ ନଳବଣ, ଶରବଣ ଓ କାଶତଣ୍ଡୀର କୁଞ୍ଜବନରେ ଘେରା ଏକ କେଳି-ସରୋବର । ସେଠି ମାଫିଆ ବା ମତ୍ସ୍ୟଜୀବୀଙ୍କ ଅନଧିକାର ପ୍ରବେଶ ନ ଥିବ । ପକ୍ଷୀମାନେ ନୀଳ ବୀଚି ଉପରେ ଦୋଳି ଖେଳୁଥିବେ । ମୁକ୍ତା-କାତି ମାଛମାନେ ଲାଞ୍ଜ ପିଟୁଥିବେ । ଟାୱାର ଉପରେ ବସି ସେ ଏକ ନିତ୍ୟ-ରାସଲୀଳା ଦେଖୁଥିବେ । ଦେଖୁଥିବେ ସାରସର ଗ୍ରୀବାରେ ଗୀତଗୋବିନ୍ଦ ଭଣିତ ଦେହି ପଦ-ପଲ୍ଲବମ୍‌ର ମୁଦ୍ରା । ତା' ଚଞ୍ଚୁରୁ ଝରୁଥିବ 'ପ୍ରିୟେ ଚାରୁଶୀଳେ'ର ଚାଟୁଭାଷା ।

ଏକ ବୈଷ୍ଣବୀୟ ଅବ୍ୟକ୍ତ ଆନନ୍ଦରେ ଭରି ଉଠୁଥିବ ତାଙ୍କ ମନ, ପ୍ରାଣ ଓ ଅନ୍ତଃକରଣ ।

## (୬)

''ଶରତ ଆସୁଛି, ଶରତ ଆସୁଛି'' ବୋଲି ଡିବି ଡିବି ଡେଙ୍ଗୁରା ବଜାଇ ଚାଲିଗଲା ପଳାତକ ମୌସୁମୀର ମେଘ । ସଗର୍ବରେ ମଥା ଟେକିଲେ ସାରସୀରେ ପଦ୍ମ ଓ ପାଟରେ କୁମୁଦ । କ୍ଷେତମାନଙ୍କରେ ଧାନ, ଆଖୁ, ମକା ଓ ବାଜରାର ଶସ୍ୟ ସବୁ ସଦର୍ପରେ ତୋଳିଲେ ନିଜ ନିଜ ଚାମର । ଆମେ ବି କିଛି କମ୍ ନୋହୁଁ ବୋଲି ହୁଂକାର ଦେଇ ଚଅଁର ଉଠାଇଲେ ପ୍ରାନ୍ତରର ମୁଥା, ଦୁର୍ବାଦଳ ।

ଦୁଃଖର ଦିନଗୁଡ଼ିକ ସରିଛି । ଦୁର୍ଦ୍ଦିନ ଅପସରି ଯାଇଛି । ଏବେ ଆସୁଛି ସୁଖର ଦିନ, ସ୍ୱପ୍ନର ଓ ଶିହରଣର ଦିନ । ନୀଡ଼ମାନଙ୍କରେ ନିରବରେ ଦୀର୍ଘଶ୍ୱାସ ଛାଡୁଥିବା ପକ୍ଷୀମାନେ ଡେଣା ଝାଡ଼ିଲେ । ପ୍ରବାସୀ ପ୍ରିୟଜନର ପଥକୁ ସତୃଷ୍ଣ ନୟନରେ ଚାହିଁଲେ ମାତା, କାନ୍ତା ଓ ପୁତ୍ରକନ୍ୟାମାନେ ।

କାରଣ ଶରତ ଆଶାର ଋତୁ, ସମ୍ଭାବନାର ଋତୁ । ଶରତ ପାର୍ବଣର ଋତୁ, ମଙ୍ଗଳର ଋତୁ । ଶରତ ମହାମେଳଣର ଋତୁ ।

ସତକୁ ସତ ଏଥର ଶରତ ଆସିଲା ଏକ ଆଶ୍ଚର୍ଯ୍ୟଜନକ ସୂର୍ଯ୍ୟୋଦୟ ନେଇ । ସ୍ୱଚ୍ଛ ସଫେଦ ଜଳଦମାଳ ବିଧୌତ ସୂର୍ଯ୍ୟଙ୍କ କିରଣ  ହେଲା ଅମଳିନ । ଶିଶିର-ସ୍ନାତ ଚନ୍ଦ୍ରକିରଣ ହେଲା ସ୍ନିଗ୍ଧ ଓ ସୁଶୀତଳ । ସରସୀରେ, ନଦୀରେ, ନାଳରେ, ପାଟରେ ଏବଂ କୁଣ୍ଡୀମାନଙ୍କରେ ଜଳ ହେଲା ସ୍ଥିର ଓ ନିର୍ମଳ । ନଈପଠାରେ ହସିଲା କାଶବଣର ସଫେଦ ସମୁଦ୍ର । ଗୁଣୁଗୁଣୁ ଗୀତଗାଇ ଧାନ ବେଣୀରେ ଆଙ୍ଗୁଳି ଚାଳନା

କଲା ମୁଗ୍ଧ ପବନ । ଆକାଶରେ ଆଞ୍ଜୁଳାଏ ଆଶୀର୍ବାଦ ପରି ବିଞ୍ଚି ହୋଇଗଲେ ଦଳଦଳ ବିହଙ୍ଗ । ବାଂଶବଣର କୁଞ୍ଜରେ ଶୁଭିଲା ତାହୁକର ଲହରିଆ ବାଂସୁରୀ ବାଦନ । ବିଲ ହିଡ଼ର ସୁଆଁ, ମୁଥା, ବେଣା ଓ ଦୁର୍ବାଦଳମାନଙ୍କର ପତ୍ର ଶୀର୍ଷରେ ଚାଲିଲା ଶିଶିରବିନ୍ଦୁର ପାହାନ୍ତିଆ ଗୋପନ ଅଭିସାର ।

କ୍ରିଷ୍ଟେନ୍ ବିହ୍ୱଳିତ ହୋଇଥିଲେ । ଅର୍ଦ୍ଧାଧିକ ବର୍ଷ ବରଫ-ବିଧୌତ ତାଙ୍କ ଦେଶରେ ଏଭଳି ବହୁବର୍ଣ୍ଣୀ ଶରତ ବିରଳ ।

ଆଖିରେ ଆଶା ଓ ଆବେଗ ଭର୍ତ୍ତିକରି ପ୍ରୋଷିତ-ଭର୍ତ୍ତୃକା ପତ୍ନୀମାନେ ଏବେ ଚାହିଁଲେ ପ୍ରବାସୀ ପ୍ରିୟର ପ୍ରତ୍ୟାବର୍ତ୍ତନ ପଥକୁ । ଚିଲିକା ଆକୁଳରେ ଚାହିଁଥିଲା ତା'ର ପରଦେଶୀ ପକ୍ଷୀଙ୍କୁ । କ୍ରିଷ୍ଟେନ ଅପେକ୍ଷା କରିଥିଲେ ସାରସ ସାରସୀଙ୍କ ଫେରନ୍ତା ବାଟକୁ ।

ପାନ୍ଥନିବାସର ବାଲକୋନିରେ ବସି ସେ ବେଳେବେଳେ ଦିବାସ୍ୱପ୍ନ ଦେଖନ୍ତି । ତାଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେଇ ଅତର୍କିତ ଭାବେ ସାରା ଆସନ୍ତେ ନାହିଁ ?

ସାରାଙ୍କଠୁ କୌଣସି ସମ୍ବାଦ ନାହିଁ । ନା ଚିଠିପତ୍ର । ନା ଟେଲିଫୋନ୍ । ପକ୍ଷୀ-ଜଗତର ରହସ୍ୟ ଉଦ୍‌ଘାଟନର ନିଶା ତାଙ୍କ ମନରୁ ପୋଛିପାରିନି ସାରାଙ୍କ ସହ ତାଙ୍କର ଅଭୁଲା ନିରୋଳା ମୁହୂର୍ତ୍ତଗୁଡ଼ିକୁ ।

ଏ ଏକ ବିରୋଧାଭାସ—କ୍ୟାରିଅରର ନିଶା ତାଙ୍କୁ ଯେତିକି ଯେତିକି ଟାଣି ନେଉଛି ଆଗକୁ, ସାରା ଓ ସନ୍ତାନଦ୍ୱୟଙ୍କ ସ୍ମୃତି ସେତିକି ସେତିକି ଟାଣି ନେଉଛି ପଛକୁ । ଅନେକ ବର୍ଷ ସେ ଏକା ଏକା ବୁଲିଛନ୍ତି ଆଫ୍ରିକାରେ, ଅଷ୍ଟ୍ରେଲିଆରେ, ଇଂଲଣ୍ଡରେ । ବିରଳ ପକ୍ଷୀଙ୍କ ସଂରକ୍ଷଣ ପାଇଁ ପ୍ରବନ୍ଧ ଲେଖିଛନ୍ତି । ବକ୍ତୃତା ଦେଇଛନ୍ତି । ଜନଚେତନା ସୃଷ୍ଟି କରିବା ପାଇଁ ବୁଲିଛନ୍ତି ଦେଶୀୟ ଲୋକଙ୍କ ଗହଣରେ । କିନ୍ତୁ ସାରା ଓ ପୁତ୍ରକନ୍ୟାଙ୍କୁ ମନରୁ ପୋଛି ଦେଇନାହାନ୍ତି କେବେ ।

ଅବଶ୍ୟ ସେମାନଙ୍କୁ ଯେତିକି ସମୟ ଦେବା କଥା ସେତିକି ଦେଇନାହାନ୍ତି । ନିଜର ଲେଖାଲେଖି ସମୟରେ ସାରା ପୃଥିବୀକୁ ଭୁଲି ଯାଆନ୍ତି କ୍ରିଷ୍ଟେନ । ଯେତେବେଳେ ସାରା ଦୁନିଆ ନିଦ୍ରାରେ ଅଚେତନ ଥାଏ, ସେ ବସି ଲେଖନ୍ତି । ଯେତେବେଳେ କ୍ରିସମସ ପ୍ରଭୃତି ଆନନ୍ଦ ମୁଖର ଉତ୍ସବମାନଙ୍କରେ ପଡ଼ୋଶୀ ଓ ସହକର୍ମୀମାନେ ଆନନ୍ଦରେ ମସଗୁଲ ଥାନ୍ତି, ସେ ତାଙ୍କର କୃଚ୍ଛ୍ର ସାଧନାରେ ଲାଗିଥାନ୍ତି । ଲେଖକମାନଙ୍କୁ ସଫଳତା ପାଇଁ ଏତିକି ମୂଲ୍ୟ ଦେବା ନିହାତି ଜରୁରୀ, ଏହା ସେ ଭଲଭାବେ ହୃଦୟଙ୍ଗମ କରନ୍ତି ।

ନିରୋଳାରେ ବସିଥିବା ବେଳେ ସାରା ଆସି ବେଳେବେଳେ ପୁଷି ବିଲେଇ ପରି ଘଷି ହୁଅନ୍ତି । ମୁହଁକୁ ପୋତି ବସନ୍ତି । ତାଙ୍କର ଧ୍ୟାନ ଭଗ୍ନ ହୋଇଯାଏ । ଭିତରେ ଭିତରେ ବିରକ୍ତ ହେଲେ ବି ସେ ମୁହଁରେ ପ୍ରକାଶ କରନ୍ତି ନାହିଁ । ସାରାଙ୍କୁ ଅନୁନୟ କରନ୍ତି—''ଆଉ ଅଳ୍ପ ସମୟ ପାଇଁ ସାରା, ପ୍ଲିଜ୍ ଲିଭ ମି ଏଲୋନ୍ ।''

ସାରା ଗୋଡ଼ କଚାଡ଼ି କଚାଡ଼ି ଚାଲିଯାଆନ୍ତି । ସେ ବୁଝି ପାରନ୍ତି ନାହିଁ ଲେଖକଟିଏ ପାଇଁ ସବୁଠୁ ମୂଲ୍ୟବାନ ଚିଜ କ'ଣ ହୋଇପାରେ ? ନିଜର ସାଧନା ପାଇଁ ଲେଖକ ଚାହାନ୍ତି କେତୋଟି ନିରୋଳା ମୁହୂର୍ତ୍ତ । ସେଇ ମୁହୂର୍ତ୍ତରେ ହିଁ ଧରା ଦିଅନ୍ତି ଶବ୍ଦର ଚିତ୍ରିତ ପ୍ରଜାପତି ସବୁ ।

ସାରସ, ସାରସୀ ଏଥର ଏକା ଏକା ଆସିଥିଲେ । ସାଥିରେ ନଥିଲେ ତାଙ୍କର ଶାବକ ଦୁଇଟି । ନଳବଣର ଶିଙ୍ଖୁ ବୁଦାମୂଳେ ଏକ ଧୂଆଁଳିଆ ଆଖି ନେଇ ବସିଥିଲା ସାରସୀ । ତା'ର ଚକ୍ଷୁ ଛଳଛଳ ହୋଇ ଉଠୁଥିଲା । ତା'ର ଶାବକଙ୍କ କଥା ତୁହାଇ ତୁହାଇ ମନେ ପଡୁଥିଲା ।

ସାରସର ମୁହଁରେ ହର୍ଷ ନ ଥିଲା କି ବିଷାଦ ନ ଥିଲା । ସେ ସ୍ଥିତପ୍ରଜ୍ଞ । ସେ ଦୁନିଆର ରୀତିନୀତି ସମ୍ପର୍କରେ ଜାଣେ । ସେ ସାରସୀକୁ ବୁଝାଉଥିଲା—''ପିଲାମାନେ ସବୁଦିନେ ପିଲା ହୋଇ ରହିବେ ନାହିଁ, ପ୍ରିୟେ ! ସେମାନେ ଦିନେ ନା ଦିନେ ବଡ଼ ହେବେ । ଜୀବନସାଥୀ ବାଛିବେ । ସେମାନଙ୍କର ମାର୍ଗର ଦିଗ ବଦଳିବ । ଏଥିରେ ଦୁଃଖ କରି ଲାଭ କ'ଣ ?''

ସାରସୀ କାନ୍ଦ କାନ୍ଦ ହୋଇ କହିଲା—''ସେ ଦୁହିଁଙ୍କ ପାଇଁ ଏତେ କରିଥିଲି । କେମିତି ଖାଇବେ, କ'ଣ ଖାଇବେ, କେଉଁଠି ଶୋଇବେ—ସବୁବେଳେ ଖାଲି ତାଙ୍କ ପାଇଁ ଚିନ୍ତା କଲି । ମୁଁ ତ ଭାବୁଥିଲି, ସେ ଦୁହେଁ ମୋତେ ଛାଡ଼ି ଦଣ୍ଡେ ରହିପାରିବେନି । ନିଶ୍ଚିତ ଭାବେ କିଛିଦିନ ଉତ୍ତାରେ ଏଠିକୁ ଉଡ଼ି ଚାଲିଆସିବେ । ପୂରାପୂରି ଭୁଲିଗଲେ କେମିତି ?''

ସାରସ କହିଲା—''ଏଇଟା ବିଧିର ଅଲଂଘନୀୟ ନିୟମ । ବୃଦ୍ଧ ପିତାମାତା ନିଜର ଅନ୍ତିମ ସମୟ ଯାଏ ପୁତ୍ରକନ୍ୟାଙ୍କୁ ଝୁରି ହେଉଥିବେ । କିନ୍ତୁ ସନ୍ତାନମାନେ ବେଳ ଆସିଲେ ନିଜ ନିଜ ବାଟ ବାଛିବେ । ତମେ ସୃଷ୍ଟିର ଏ ନିୟମକୁ ବଦଳାଇ

ପାରିବ ନାହିଁ । ତେଣୁ ବୃଥା ଅନୁଶୋଚନା କାହିଁକି ?''

—''ଆଜି ଆମେ ପ୍ରବାସରେ ଅଛେ । ହୁଏତ ପର୍ବତ ଚୂଡ଼ାରେ ବାଜି ଡେଣା ଭାଙ୍ଗିଯିବ । କିମ୍ବା ପାଦ ଲାଖିଯିବ କେଉଁ ଧୀବରର ଜାଲରେ । ଅଥବା ବତିଘରର ଆଲୁଅରେ ଆଖି ଅନ୍ଧ ହୋଇଯିବ । ସେଠି କିଏ ଆମର ସାହା ଭରସା ହେବ ?''

—''ସବୁ ଈଶ୍ୱରଙ୍କ ଉପରେ ଛାଡ଼ିଦିଅ । ସେ ହିଁ ହେବେ ଆମର ସାହା ଭରସା ।

ସେଦିନ କ୍ରିଷ୍ଟେନ ସାଥୀରେ ବନବିଭାଗର ଜଣେ ଅଧିକାରୀଙ୍କୁ ନେଇ ଆସିଥିଲେ । ତରୁଣ ରେଞ୍ଜ ଅଫିସର । ଆଦର୍ଶରେ ଓତଃପ୍ରୋତଃ ତାଙ୍କର ଶରୀର । ଚିଲିକାର ପରିବେଶକୁ କିପରି ରକ୍ଷା କରାଯାଇ ପାରିବ, ଏବଂ ଏହାକୁ ଏକ ନିତିଦିନିଆ ପକ୍ଷୀ-ଅଭୟାରଣ୍ୟ କରି ହେବ, ଦୁହିଁଙ୍କ ମଧ୍ୟରେ ସେହି ସମ୍ପର୍କରେ ଆଲୋଚନା ଚାଲିଥିଲା ।

—''ଆମେ ଯେତେବେଳେ କଲେଜରେ ପଢୁଥିଲୁ ଚିଲିକାକୁ ଷ୍ଟଡିଟୁରରେ ଆସିଥିଲା ବେଳେ ଦେଖିଛୁ, ପକ୍ଷୀମାନେ ଚାରିଆଡ଼େ ହାଉଜାଉ ହେଉଥିଲେ । ଜଟିଆ ନାସି ଠାରୁ ଆରମ୍ଭ କରି ନଳବଣଯାଏ, ଯୁଆଡ଼େ ଚାହିଁଲେ ଖାଲି ପକ୍ଷୀ ଆଉ ପକ୍ଷୀ ।ଏବେ କିନ୍ତୁ ସେମାନେ ନଳବଣରେ କେନ୍ଦ୍ରିତ ହେଉଛନ୍ତି । ସେମାନଙ୍କର ବିହରଣ ସ୍ଥଳ ସଂକୁଚିତ ହୋଇଯିବା ଯୋଗୁଁ ସେମାନଙ୍କ ସଂଖ୍ୟା ମଧ୍ୟ ହ୍ରାସ ପାଇଛି ।'' — ମନ୍ତବ୍ୟ ଦେଲେ ରେଞ୍ଜ ଅଫିସର ଶ୍ରୀ ଗୋଚ୍ଛାୟତ ।

—''କିନ୍ତୁ କାହିଁକି ଏଭଳି ଅବନତି ଘଟିଛି, ମିଃ ଗୋଚ୍ଛାଏଟ୍—ଆଇ ଆମ ସରି, ୟୁ ହାଭ ଏ ଡିଫିକଲ୍ଟ ନେମ ।''

—''ୟୁ କଲ୍ ମି ଅରୁଣ ।''

—''ଚିଲିକା ଭିତରେ ଚାରିଆଡ଼େ ଖାଲି ଜାଲ ଆଉ ଜାଲ । ଯାକୁ କାହିଁକି ପ୍ରଶ୍ରୟ ଦିଆଯାଇଛି ?''

—''ଗଣଆନ୍ଦୋଳନ ପଳରେ ଅଣମତ୍ସ୍ୟଜୀବୀଙ୍କ ଚିଙ୍ଗୁଡ଼ି ଘେରି ସିନା ଉଠିଗଲା, ମତ୍ସଜୀବୀମାନଙ୍କ ଏହି ଘେରି ଅବ୍ୟାହତ ଅଛି । ସଂଖ୍ୟା ବଢୁଛି ମଧ୍ୟ ।''

—''ତାକୁ କମାଇ ହେବନି କାହିଁକି ?''

—''ଚିଲିକା ପାର୍ଶ୍ୱବର୍ତ୍ତୀ ଗାଁଗୁଡ଼ିକର ମତ୍ସ୍ୟଜୀବୀ ସମବାୟ ସମିତିଗୁଡ଼ିକୁ

ପାରମ୍ପରିକ ପଦ୍ଧତିରେ ମାଛ ମାରିବା ପାଇଁ ବହୁ ପୂର୍ବରୁ ଲିଜ୍ ଦିଆଯାଇଛି । ଏବେ ସେ ଲିଜ୍‌କୁ ବାତିଲ କରିବା ମୁସ୍କିଲ ।''

ତା'ପରେ ସେ ଯୋଡ଼ିଲେ–''ବର୍ଷ ସାରା, ରାତି ଦିନ ମାଛ ମରା ଚାଲିଛି । ରାତିରେ ଲୁଚିଛପି ଟ୍ରଲରରେ ଯାଇ ବି କିଛି ଅପରାଧୀ ମାଛ ମାରୁଛନ୍ତି । ଏହି ସଘନ ମାଛମରା ଯୋଗୁଁ ମାଛ ଉତ୍ପାଦନ ମଧ ଧୀରେ ଧୀରେ କମିଯାଉଛି । ଆମ ହିସାବରୁ ଜଣାଯାଏ ଯେ ଦଶବର୍ଷ ତଳେ ଚିଲିକାରୁ ବର୍ଷକୁ ପାଞ୍ଚ ଛ' ହଜାର ଟନ୍ ମାଛ ଧରା ହେଉଥିବା ବେଳେ ଏବେ ବର୍ଷକୁ ଏହାର ପରିମାଣ ଏକ ହଜାର ଟନ୍‌ରେ ପହଞ୍ଚିଛି ।

–''ତା'ହେଲେ ଆପଣଙ୍କର ପରାମର୍ଶ କ'ଣ, ମି: ଅରୁଣ ?''

–''ଚିଲିକାର ଅଭୟାରଣ୍ୟର ସୀମାକୁ ବଢ଼ାଇ ମାଛ-ଲିଜ୍ ଇଲାକାକୁ କମାଇବା ଦରକାର । ମାଛଧରିବା ସମୟକୁ ନିୟନ୍ତ୍ରଣ କରିବା ଦରକାର । ବର୍ଷାଋତୁରେ ଜାଆଁଳ ହେବା ସମୟରେ ମାଛ ଧରାକୁ ସମ୍ପୂର୍ଣ୍ଣ ଭାବେ ନିଷେଧ କରିବା ଦରକାର । ଏ ସଂପର୍କରେ ସରକାର ଆଇନ ପ୍ରଣୟନ କରିବା ଉଚିତ ।''

କ୍ରିଷ୍ଟେନ ନୋଟଖାତାରେ କିଛି ଟିପିଲେ । ଏହି ସମୟରେ ଦୁଇଜଣ ମତ୍ସ୍ୟଜୀବୀ ତାଙ୍କ ବାଟଦେଇ ଫେରୁଥିଲେ । ଅରୁଣ ତାଙ୍କୁ ଜାଣନ୍ତି ।

–''କ'ଣ ସନେଇଁ ! ଆଜି ଭଲ ମାଛ ପଡ଼ିଛି ?''

–''ନା, କୋଡ଼ିଏ କିଲୋ ହେବ ।''

–''ଏହା ପୁଣି ଦଶ ଜଣରେ ବଣ୍ଟାଯିବ । ତା'ର ସାଥୀ ଦନେଇ ଯୋଡ଼ିଲା ।

–''ଏତିକିରେ କେମିତି ଗୁଜୁରାଣ ମେଣ୍ଟାଉଛ ? ଆଉ କିଛି ଧନ୍ଦା କରୁନ ?''

–''ଆଉ କ'ଣ କରିବୁ ? ଆମର ତ ଜମି ନାହିଁ ।''

ଅରୁଣ କ୍ରିଷ୍ଟେନଙ୍କୁ ବୁଝାଉଥିଲେ–''ଏମାନଙ୍କର ଚିଲିକା ହିଁ ବାପା । ଚିଲିକା ହିଁ ମା' । ଏ ମାନଙ୍କର ଜମି ବାଡ଼ି ନାହିଁ । ଓଡ଼ିଶାରେ କୌଣସି ଅନ୍ୟ ଶିଳ୍ପ କଳକାରଖାନା ତ ନାହିଁ । ତେଣୁ ଏମାନେ ଏଇଠି ମାଟି କାମୁଡ଼ି ପଡ଼ିଛନ୍ତି ।''

–''ଆପଣ ସୁନା ଅଣ୍ଡା ଦେଉଥିବା କୁକୁଡ଼ା ଓ ତା'ର ମୁନିବ କଥା ଜାଣନ୍ତି ?''

ଅରୁଣ ମୁଣ୍ଡ ଟୁଙ୍ଗାରି ହସିଲେ ।

–''ଚିଲିକା ଏବେ ଏକ ସୁନା ଅଣ୍ଡା ଦେଉଥିବା କୁକୁଡ଼ା । ଏମାନେ ଶେଷକୁ ଏହାରି କାଳ ହେବେ ।''

—"ହଁ ଯେ, ଏମାନଙ୍କୁ କିଏ ବୁଝାଇବ ?"

—"ଏଠି କ'ଣ କୌଣସି ସ୍ୱେଚ୍ଛାସେବୀ ସଂଗଠନ ନାହିଁ ?"

—"ସେମାନଙ୍କ କଥା ନ କହିଲେ ଭଲ ।"

—"ମୁଁ ସେମାନଙ୍କ ପାଖକୁ ଯିବି ।" କ୍ରିଷ୍ଟେନ ଭରସା ଦେଲେ ।

ନଳବଣ ପାଖେଇ ଯାଇଥିଲା । ତାଙ୍କୁ ଦେଖି ଲମ୍ବ ଲମ୍ବ ପାହୁଣ୍ଡ ପକାଇ ସାରସ ଚାଲିଲା କ୍ରିଷ୍ଟେନଙ୍କ ପାଖକୁ । ତାଙ୍କର ଉଦ୍ୟମ ଯୋଗୁଁ ଏହି ନଳବଣ ଏକ ତପୋବନରେ ପରିବର୍ତ୍ତିତ ହୋଇଛି । ସତେ ଯେପରି ଏହି ତପୋବନର ମହର୍ଷିଙ୍କୁ ସ୍ୱାଗତ ଜଣାଇବାପାଇଁ ପକ୍ଷୀମାନେ ଉଡ଼ିଆସିଲେ । ପକ୍ଷ ବିସ୍ତାର କରି ଆଦିମ ଅଧିବାସୀଙ୍କ ଭଳି ଆରମ୍ଭ କଲେ ସାମୂହିକ ନୃତ୍ୟ ।

—"ଆପଣ ପକ୍ଷୀମାନଙ୍କ ମନ ଜିଣିଯାଇଛନ୍ତି, ତା'ହେଲେ ।"

କ୍ରିଷ୍ଟେନ ହସିଲେ । କହିଲେ—"ଏହି ନଳବଣକୁ ଏକ ନିତିଦିନିଆ ଅଭୟାରଣ୍ୟ କରିବାକୁ ହେଲେ ନଳବଣରେ ଆହୁରି ଘାସ, ଗୁଳ୍ମ ଲଗାଇବାକୁ ପଡ଼ିବ । ଚାରିପଟକୁ କେନାଲ କରି ପାଣିର ବ୍ୟବସ୍ଥା କରିବାକୁ ପଡ଼ିବ । ତା'ହେଲେ କିଛି ପକ୍ଷୀ ଏଠି ବର୍ଷସାରା ରହିବେ । ଅଣ୍ଡା ଦେବେ ଏବଂ ଛୁଆ କରିବେ ।"

କଟେଜକୁ ଏଇମାତ୍ର ଫେରୁଥିଲେ କ୍ରିଷ୍ଟେନ । ଏହି ସମୟରେ ବୃଦ୍ଧ ବିୟରର ନବୀନ ଆସି କବାଟରେ ମୃଦୁ କରାଘାତ କଲା—"ହରେକୃଷ୍ଣ ସାହେବ, ଆପଣଙ୍କର ଚିଠି ।"

ହ୍ୟାରି କ୍ରିଷ୍ଟେନଙ୍କର ଏକ ସମ୍ପୂର୍ଣ୍ଣ ଭାରତୀୟ ନାମକରଣ କରିଛି ନବୀନ । ସ୍ମିତ ହସଟିଏ ଛାଡ଼ି ସେ ମିନିଟିଏ ପାଇଁ ଠିଆହେଲା ବକ୍‌ସିସ୍ ଆଶାରେ । କ୍ରିଷ୍ଟେନ ଚିଠିର କଭରଟି ପଢ଼ିଲେ । ଶହେ ଟଙ୍କିଆ ନୋଟଟିଏ ଗୁଞ୍ଜିଦେଲେ ନବୀନର ହାତରେ ।

ଚିଠିଟି ଆସିଥିଲା କାନାଡ଼ାରୁ । ଲାରାର ହସ୍ତାକ୍ଷର । ଖୁସିରେ ଡେଇଁଉଠିଲେ ସେ । ଲାରାର ପ୍ରଥମ ଚିଠି । ତାଙ୍କ ସାତ ବର୍ଷର ଝିଅ ତା'ହେଲେ ଚିଠି ଲେଖି ଜାଣିଲାଣି ।

ଖୁବ ସତର୍କତାର ସହ ଏୟାରମେଲ୍ ଲଫାପାଟିର ମୁଖାଗ୍ରଟିକୁ କାଟିଲେ ସେ । ତା'ପରେ ତାଙ୍କର ହାତ ଥରିଗଲା । ସେ ଲଥିକରି ବସିପଡ଼ିଲେ ସୋଫାରେ । ତାଙ୍କ କପାଳରୁ ଝାଳ ବହିଗଲା ବିନ୍ଦୁ ବିନ୍ଦୁ ହୋଇ । ଚିଠିଟି ଥିଲା କେଡ଼େ ସଂକ୍ଷିପ୍ତ । କିନ୍ତୁ ତା'ର ସନ୍ଦର୍ଭ ଥିଲାକେଡ଼େ ନିର୍ମମ !

—''ଡାଡି, ଜଲଦି ଆସ । ମାମା ମୋତେ ହଷ୍ଟେଲରେ ଛାଡ଼ି ଚାଲିଯାଇଛି । ସେ ଏବେ ରବର୍ଟ ଅଙ୍କଲଙ୍କ ସାଥୀରେ ରହୁଛି । ଆମ ଘରେ ନୁହେଁ । ତା' ସାଥୀରେ ପିଟର ଯାଇଛି । ତମେ କେବେ ଆସିବ ? ଆଇ ମିସ୍ ୟୁ, ଡାଡ୍''—ଲାରା ।

ତାଙ୍କ ପାଦ ତଳୁ ଭୂମି ଅପସାରିତ ହେଲାଭଳି ଲାଗିଲା । ଚିଠିଟି ପଡ଼ିଥିଲା ସେଣ୍ଟର ଟେବୁଲ ଉପରେ । ତା'ର ପ୍ରତିଟି ଅକ୍ଷର ଦିଶୁଥିଲା ଲାରାର ଢଳଢଳ ଅଶ୍ରୁବିନ୍ଦୁ ଭଳି ।

''ଓଃ ସାରା, ତମେ କ'ଣ କଲ ?'' ଏତକି ଉଚ୍ଚାରଣ କରିବା ପରେ ସେ ନିର୍ବାକ ହୋଇଯାଇଥିଲେ ।

ଓଡ଼ିଶାରୁ ଫେରିବାର ଅବ୍ୟବହିତ ପୂର୍ବରୁ ସାରା ତାଙ୍କୁ କଥା ଛଳରେ କହିଥିବାର ମନେ ପଡ଼ିଲା—''ତମେ ସାରା ଓ ସାରସ ଭିତରୁ ଜଣକୁ ବାଛିବାକୁ ପଡ଼ିବ ।''

ତାହା ଏକ ଅଭିମାନର ଭାଷା ଭାବି ସେତେବେଳେ ସେ ଗୁରୁତ୍ୱ ଦେଇନଥିଲେ । ଚିଲିକାରେ ସାତଦିନ ରହଣି ସମୟରେ ସାରାଙ୍କ ଅନ୍ୟମନସ୍କତାର କାରଣ ସେ ଏବେ ବୁଝି ପାରୁଥିଲେ ଅନେକ ବିଳମ୍ବରେ ।

ସେ ସନ୍ଧ୍ୟାବେଳ ସାରା ବିଛଣାରେ ପଡ଼ି ରହିଥିଲେ । ସେଣ୍ଟର ଟେବୁଲରେ ନବୀନ ରଖିଦେଇଥିବା ଚା ଏବଂ ସ୍ନାକ୍ସ ସେମିତି ପଡ଼ି ରହିଥିଲା । ଡିନରର ଅଡର ମଧ୍ୟ ଦେଲେ ନାହିଁ । ରାତି ସାରା ତାଙ୍କ ଆଖିରେ ନିଦ ନ ଥିଲା । ସେ ନିଜକୁ ପଚାରୁଥିଲେ—ସାରା କାହିଁକି ତାଙ୍କୁ ଏଭଳି ଶାସ୍ତି ଦେଲେ ?

ଝର୍କାବାଟେ ଶାରଦୀୟ ଜହ୍ନର ସ୍ନିଗ୍ଧ କିରଣ ତେର୍ଛା ହୋଇ ପଡୁଥିଲା । ସେ ଆଡ଼କୁ ଏକ ପିପାସୀ ଦୃଷ୍ଟିରେ ଏକାଗ୍ର ଚିତ୍ତରେ ଚାହିଁଥିଲେ ସେ । ତାଙ୍କର ଉଦ୍‌ବେଳିତ ମନ ଜହ୍ନକୁ ପଚାରିବାକୁ ବ୍ୟଗ୍ର ହେଉଥିଲା—କାହିଁକି ସାରା ଛାଡ଼ିଗଲେ ? କାହିଁକି ? କାହିଁକି ?? ସତେ ଯେପରି କାରଣଟା ଜାଣିଗଲେ ତାଙ୍କ ମନ ମଧ୍ୟରେ ଏ ସମୁଦ୍ରମନ୍ଥନଟା ଶାନ୍ତ ହୋଇଯାନ୍ତା ।

ପରଦିନ ସେ ବାହାରିଲେ ଟରୋଣ୍ଟୋ ଉଦ୍ଦେଶ୍ୟରେ । ଭୁବନେଶ୍ୱରରୁ ଦିଲ୍ଲୀ, ଦିଲ୍ଲୀରୁ ବମ୍ବେ । ବମ୍ବେରୁ ଟରୋଣ୍ଟୋ । ବଡ଼ ଦୀର୍ଘ କ୍ଲାନ୍ତିକର ସମୟସାପେକ୍ଷ ଯାତ୍ରା । ଟିକେଟ ମିଳିଲା ଅତି କଷ୍ଟରେ । ପ୍ରତ୍ୟେକ ଏୟାରପୋର୍ଟରେ ଅପେକ୍ଷା । ବିଳମ୍ବିତ ଚେକ୍‌ଇନ୍ । କଷ୍ଟପ୍ରଦ ଲଗେଜ-ବୁକିଙ୍ଗ । ସିକ୍ୟୁରିଟି ଚେକ୍, ଇମିଗ୍ରେସନ ଚେକ ଓ କଷ୍ଟମ ଚେକ୍‌ର ବିରକ୍ତିକର ଫର୍ମାଲିଟିଜ । ପ୍ରତ୍ୟେକ ମିନିଟ ଲାଗୁଥିଲା ଘଣ୍ଟାପରି । ପ୍ରତ୍ୟେକ ଘଣ୍ଟା ଲାଗୁଥିଲା ଏକ ଦିନ ପରି । ଯେତେବେଳେ କାମ ସବୁଠୁ ବେଶୀ ଜରୁରୀ, ଏମିତି ବାଧାବିଘ୍ନ ସବୁ ଶୋଭାଯାତ୍ରା କରି ଆସନ୍ତି କାହିଁକି କେଜାଣି ? ଭାବୁଥିଲେ, ସେ ସାରସଟିଏ ହୋଇଥାନ୍ତେ କି ! ବିନା ବାଧା, ବିନା ପ୍ରତିବନ୍ଧକରେ ସେ ଉଡ଼ି ଯାଇଥାନ୍ତେ କାନାଡ଼ା ।

ପ୍ଲେନ୍ ଭିତରେ ଗୋଟିଏ ଚିନ୍ତା ତାଙ୍କୁ ତିଳ ତିଳ କରି ଦଗ୍ଧ କରୁଥିଲା । ସାରା ଏପରି କଲେ କାହିଁକି ? କ'ଣ ଅଭାବ ଥିଲା ତାଙ୍କର ନିକଟି ? କ'ଣ ଦୁର୍ବଳତା ଦେଖିଲେ ସେ ତାଙ୍କ ନିକଟରେ ?

ଦୁଇ ବର୍ଷ ତଳେ ତାଙ୍କ ଜନ୍ମଦିନରେ ସେ ସାରାଙ୍କୁ ଏକ ବଡ଼ ବଂଗ୍‌ଲୋ ଉପହାର ସ୍ୱରୂପ ଦେଇଛନ୍ତି । ତାଙ୍କର ପ୍ରଥମ ପୁସ୍ତକରୁ ପ୍ରାପ୍ତ ସମସ୍ତ ଆତଭାନ୍ସ ବିନିମୟରେ ସେ କିଣିଥିଲେ ସେ ବଂଗ୍‌ଲୋ । ଓକ୍ କାଠରେ ତିଆରି ଡୁ୍ୟପ୍ଲେକ୍ସ ଘର । ସାମ୍‌ନାରେ ଫର୍ଚ୍ଚା ଲନ୍ । ଲ୍ୟାଣ୍ଡ ସ୍କେପିଂ କରି ଗୋଟିଏ ପଟକୁ ଢାଲୁ ରଖାଯାଇଛି । ଉପର ପଟେ ପହରାଦାର ଭଳି ଠିଆହୋଇଛି ମ୍ୟାପଲ ଗଛଟିଏ । ମ୍ୟାପଲ ଗଛ ତଳେ କାଠର ବେଞ୍ଚଟିଏ । ଘର ପଛରେ ପପଲାର, ସୀଡ଼ାର ଓ ସାଇପ୍ରେସର ଜଙ୍ଗଲ । ତା'ର ବହଳ ସବୁଜିମାରେ ପାଖ ରାଜମାର୍ଗରୁ ଆସୁଥିବା ଗାଡ଼ିମୋଟରର ଧୂଆଁ ସହ ହର୍ଣ୍ଣ ମଧ ମିଳାଇ ଯାଏ ।

କେବେ ଆର୍ଥିକ ଅସ୍ୱଚ୍ଛଳତାରେ ସେ ରଖିନାହାନ୍ତି ସାରାଙ୍କୁ । ଅଯାଚିତ ଭାବେ ତାଙ୍କ ହାତରେ ଟେକି ଦେଇଛନ୍ତି ସମସ୍ତ ପ୍ରାଚୁର୍ଯ୍ୟ । ସମୟ ଦେବାରେ ଅବଶ୍ୟ କାର୍ପଣ୍ୟ କରିଛନ୍ତି ସେ । କିନ୍ତୁ ତା' ବଦଳରେ ସାରାଙ୍କୁ ଦେଇଛନ୍ତି ବିଶ୍ୱବ୍ୟାପୀ ପ୍ରତିଷ୍ଠା । ତାଙ୍କ ସହ ସାରାଙ୍କ ଫଟୋ ବାହାରିଛି ପୃଥିବୀର ସବୁ ପ୍ରଖ୍ୟାତ ସମ୍ବାଦପତ୍ରରେ । ଅନେକ ଥର ସେ ଟେଲିଭିଜନର କାର୍ଯ୍ୟକ୍ରମରେ ମଧ ଅଂଶଗ୍ରହଣ କରିଛନ୍ତି । ତାଙ୍କ ସମସ୍ତ ପୁସ୍ତକର ସ୍ୱତ୍ତ୍ୱାଧାରିଣୀ ସେ । ଏତେ ମାନ, ସମ୍ମାନ, ଧନ ଓ ପ୍ରତିଷ୍ଠାକୁ ତୁଚ୍ଛ କରି ସେ ଚାଲିଗଲେ !

ରବର୍ଟ ଭିତରେ କେଉଁ ଗୁଣ ଦେଖି ସାରା ତାଙ୍କୁ ଛାଡ଼ି ଗଲେ ? ତାଙ୍କ [illegible] କ'ଣ ଅଭାବ ରହିଗଲା ?

ଥରେ କୌଣସି ସମ୍ବାଦପତ୍ରରେ ସେ ନାରୀ ମନସ୍ତତ୍ତ୍ୱ ଉପରେ ଏକ ସନ୍ଦର୍ଭ ପଢୁଥିଲେ । ସ୍ତ୍ରୀମାନେ କିଭଳି ସ୍ୱାମୀ ପସନ୍ଦ କରନ୍ତି, ସେ ସମ୍ପର୍କରେ ଏକ ସର୍ବେକ୍ଷଣର ଫଳ ପ୍ରକାଶିତ ହୋଇଥିଲା । ତାହା ଅନୁସାରେ, ସଂଭୋଗ ବା ସନ୍ତାନ ଜନ୍ମ କଥା ପଡ଼ିଲାବେଳେ ନାରୀମାନେ କୁଆଡ଼େ ସୁଦର୍ଶନ, ସୁଗଠିତ ଶରୀରଧାରୀ ପୁରୁଷଙ୍କୁ ପସନ୍ଦ କରନ୍ତି । କିନ୍ତୁ ଜୀବନସାଥୀ ନିର୍ବାଚନ ବେଳେ ସେମାନେ ଏଭଳି ସ୍ୱାମୀ ପସନ୍ଦ କରନ୍ତି ଯେ କି ରୋଜଗାରକ୍ଷମ ହେବା ସଙ୍ଗେ ସଙ୍ଗେ ସମସ୍ତ ଗୃହକାର୍ଯ୍ୟରେ ସାହଚର୍ଯ୍ୟ ଦେବାକୁ କୁଣ୍ଠା କରୁନଥିବ ।

ଏହି ଅନୁଶୀଳନ ପଢ଼ି ସେ ମନେ ମନେ ହସିଥିଲେ ।

ଏବେ ଭାବୁଥିଲେ, ସାରା କ'ଣ ସେହି ମାନଦଣ୍ଡ ପ୍ରୟୋଗ କରି ତାଙ୍କୁ ଅଯୋଗ୍ୟ ଘୋଷିତ କରିଦେଲେ ?

ଆଉ ରବର୍ଟ । ସେ ଥିଲା ତାଙ୍କର ଛାତ୍ର ଓ ସହକର୍ମୀ । ଖୁବ୍ ସ୍ନେହ କରୁଥିଲେ ତାକୁ । ମନେ ପଡୁଥିଲା, ଭର୍ଜିନିଆ ପାଟରେ ତା'ର ପ୍ରାଣରକ୍ଷା ବେଳେ ତା'ର କୃତଜ୍ଞତାର ଭାଷା : ''ସାର୍, ଆପଣ ମୋର ପ୍ରାଣଦାତା । ମୋର ପିତା ସଦୃଶ । ଆପଣଙ୍କର ଋଣ ଜୀବନସାରା ଶୁଝି ପାରିବିନି ।'' ଯେଉଁଠି ଦେଖିଲେ ବି ସବୁବେଳେ କୃତଜ୍ଞତାରେ ଗଦଗଦ ହୁଏ । ଶେଷରେ ଏଇ ଭାବେ ସେ ଦେଲା ଗୁରୁଦକ୍ଷିଣା ! ଦୁନିଆରୁ ବିଶ୍ୱାସ ନାମକ ଏକ ଶବ୍ଦର ବୋଧହୁଏ ସତ୍ତା ଲୋପ ପାଇଯିବ । ମଣିଷର ଅଭିଧାନରୁ ସହାନୁଭୂତି ମଧ୍ୟ ବିଲୟ ଲଭିବ ।

ଏୟାର ହୋଷ୍ଟେସମାନଙ୍କ ଲଳିତ କଣ୍ଠ, ଇନ୍‌ଫ୍ଲାଇଟ ଟେଲିଭିଜନର ମନୋରଞ୍ଜନ କାର୍ଯ୍ୟକ୍ରମ, ପାଇଲଟଙ୍କ ଉଦ୍‌ଘୋଷଣା ଇତ୍ୟାଦି ତାଙ୍କ କାନରେ ବାଜୁନଥିଲା । କାନରେ କେବଳ ପ୍ରତିଧ୍ୱନିତ ହେଉଥିଲା କୁନି ଝିଅର କରୁଣ ଚିତ୍କାର– ''ଡାଡି, ତମେ ଜଲ୍‌ଦି ଆସ ।'' ଫ୍ଲାଇଟରେ ସେ କ'ଣ ଖାଇଛନ୍ତି, କ'ଣ ପିଇଛନ୍ତି, ସେ ଜାଣିନାହାନ୍ତି । ଫ୍ଲାଇଟ୍ ଲ୍ୟାଣ୍ଡିଂ କଲେ ହିଁ ସେ ନିଜର ସମ୍ବିତ୍ ଫେରି ପାଉଥିଲେ ।

ଇମିଗ୍ରେସନ କାଉଣ୍ଟର ଓ କଷ୍ଟମସ୍ କାଉଣ୍ଟରର ଅର୍ଗଳି ଭାଙ୍ଗି ଦୌଡ଼ିଯିବାକୁ ଇଚ୍ଛାହେଉଥିଲା ତାଙ୍କର । ଭାବୁଥିଲେ, ଥରେ ଏୟାରପୋର୍ଟ ବାହାରକୁ ଗଲେ ସେ କ୍ୟାବ୍‌ରେ ବସି ସିଧା ସାରାଙ୍କ ପାଖକୁ ଯାଇ ପଚାରିବେ–''ତୁମେ ଏପରି କାହିଁକି କଲ, ସାରା ! ତୁମେ ମୋ ପାଖକୁ ଫେରିଆସ । ଭୁଲ ତୁମର ନୁହେଁ । ଭୁଲ ମୋର ।''

ସେ ସ୍ଥିର କଲେ ପ୍ରଥମେ ଲାରାର ହଷ୍ଟେଲକୁ ଯିବେ । ତା'ପରେ ସାରାଙ୍କୁ ଭେଟିବେ ।

ବାହାରେ ବରଫ କଣିକା ସରସର ହୋଇ ନିରନ୍ତର ଝରୁଥିଲା । ରାସ୍ତାର ପିଚୁ ଢାଙ୍କିହୋଇ ଯାଉଥିଲା ଏକ ବହଳ ଧଳା ଚାଦରରେ । ପାର୍ଶ୍ୱବର୍ତ୍ତୀ ଗଛବୃଛ ଥରୁଥିଲେ ବରଫ ମାଡ଼ରେ । ସେସବୁ ଖାତିର ନ କରି କ୍ରିଷ୍ଟେନ ଚାଲିଥିଲେ ଲାରାର ହଷ୍ଟେଲକୁ ।

ଉଭଣ୍ଡଚିଟରରୁ ବରଫକଣିକା ଝାଡ଼ି ସେ ଲାଉଞ୍ଜରେ ଅପେକ୍ଷା କଲେ । ଲାରା ଦୌଡ଼ି ଦୌଡ଼ି ଆସି ତାଙ୍କୁ କୁଣ୍ଢେଇ ପକାଇଲା । ପିତା, କନ୍ୟାଙ୍କ ଆଖିରୁ ବୋହୁଥିଲା ଅମାନିଆ ଲୁହର ଧାରା । ସେ ଚୁମାରେ ପୋତି ଦେଉଥିଲେ କନ୍ୟାର କପାଳ ଓ କପୋଳକୁ ।

ଲାରାର ହଷ୍ଟେଲ ୱାର୍ଡେନ୍ ସେଠି ନିଶ୍ଚଳ କଣ୍ଢେଇ ପରି ଠିଆ ହୋଇ ପିତା ଓ କନ୍ୟାର ମିଳନ ଦୃଶ୍ୟକୁ ଦେଖୁଥିଲେ ।

ସେ ସାରାଙ୍କ ଗୃହତ୍ୟାଗ ବିଷୟ ଭଲଭାବେ ଜାଣନ୍ତି ।

ସିଷ୍ଟର କ୍ୟାଥେରିନଙ୍କୁ ଭେଟି ସାରା ସବୁକଥା କହିଥିଲେ । ଲାରାର ଦାୟିତ୍ୱ ନେବା ପାଇଁ ତାଙ୍କୁ ଅନୁରୋଧ କରିଥିଲେ ।

–''ନିଜ ସ୍ୱାମୀଙ୍କୁ ପରିତ୍ୟାଗ କରି ଅନ୍ୟଜଣକ ସହ ଘରସଂସାର କରିବା ପାଇଁ ମନସ୍ଥ କରି ତୁମେ ଠିକ୍ କରିନାହଁ, ସାରା । ଏଥିରେ ଭଗବାନ ଯୀଶୁ କ୍ଷୁବ୍ଧ ହେବେ ।''–ସିଷ୍ଟର ତାଙ୍କୁ ଚେତାଇଥିଲେ ।

–''ମୁଁ ଜାଣେ । ମୁଁ ଯେଉଁ ପଦକ୍ଷେପ ନେବାକୁ ଯାଉଛି, ତାହା ଠିକ୍ ନୁହେଁ । କିନ୍ତୁ ମୋର ଅନ୍ୟ କିଛି ଚାରା ନାହିଁ ।''

–''ତୁମେ ଦୁଇଟି ସନ୍ତାନର ଜନନୀ । ସେ ଦୁହିଁଙ୍କ ଉପରେ ଏହାର କୁଫଳ ପଡ଼ିବ । ବିଶେଷ କରି ଲାରା ଉପରେ । ସେ ବୁଝିବା ଶୁଝିବାର ହେଲାଣି । ତୁମର ଏ ସମ୍ପର୍କକୁ ସେ କେବେ ଗ୍ରହଣ କରି ପାରିବ ନାହିଁ ।''

–''ତାହା ବି ମୁଁ ଜାଣେ । ସେ ମୋତେ କଦାପି କ୍ଷମା କରିବ ନାହିଁ । କିନ୍ତୁ ମୁଁ ଯେଉଁ ପନ୍ଥା ଆବୋରି ନେଇଛି, ସେଥିରୁ ଆଉ ଲେଉଟିବାର ଅବକାଶ ନାହିଁ । ମୁଁ

ଏବେ ଅନ୍ତଃସତ୍ତ୍ୱା । ମୋ ଗର୍ଭରେ ରବର୍ଟର ସନ୍ତାନ ବଢ଼ୁଛି । ସିଷ୍ଟର, କ୍ୟାନ୍ ୟୁ ହେଲ୍ପ ମି ? ଲାରାକୁ ଟିକିଏ ସମ୍ଭାଳି ନେବେ । ମୁଁ ସବୁ ଦିନ ପାଇଁ ଆପଣଙ୍କ ପାଖରେ ଋଣୀ ରହିବି ।''

ସେ ଆଉ କିଛି କହି ପାରିନଥିଲେ । ସିଷ୍ଟରଙ୍କ ହାତ ଧରିଥିଲେ ଅସରାଏ ଆବେଗରେ । ଫେରିଥିଲେ ଆଖିରେ ଲୁହ ଓ ଛାତିରେ କୋହ ନେଇ ।

କ୍ରିଷ୍ଟେନ ୱାର୍ଡନଙ୍କ ଅନୁମତି ନେଇ ଗୋଟିଏ ଦିନ ପାଇଁ ଲାରାକୁ ଘରକୁ ଆଣିଲେ । ଆସିଲାବେଳେ ୟୁନିଭର୍ସିଟି ବାଟ ଦେଇ ଫେରିଲେ । ୟୁନିଭର୍ସିଟି କ୍ୟାମ୍ପସରେ ରବର୍ଟର ଘରେ ତାଲା ପଡ଼ିଥିଲା । ୟୁନିଭର୍ସିଟି ଅଫିସ କିମ୍ବା ଆଉ କାହା ଘରକୁ ଯାଇ ଅନୁସନ୍ଧାନ କରିବାକୁ ସେ ମନ ବଳାଇଲେ ନାହିଁ ।

ଟରୋଣ୍ଟୋରେ ତାଙ୍କ ନିଜ ଘରର ସନସନ ନିରବତା ତାଙ୍କୁ ଯେପରି ଖାଇ ଗୋଡ଼ାଉଥିଲା । ରାତିରେ ତୁଷାରପାତ ଆହୁରି ପ୍ରବଳ ହୋଇଥିଲା ।

ସକାଳୁ ଅବଶ୍ୟ ତୁଷାରପାତ ବନ୍ଦ ହୋଇ ଯାଇଥିଲା । ଆକାଶ ନିର୍ମଳ ହୋଇଯାଇଥିଲା । ଲନ୍‌ରେ ସୂର୍ଯ୍ୟକିରଣ ବିଛୁରିତ ହେଲାପରେ ସେ ଲାରାକୁ ନିଦରୁ ଉଠାଇଲେ । ପିତା ଓ ପୁତ୍ରୀ ଲନ୍‌ର ମ୍ୟାପଲ ଗଛ ତଳେ ବେଞ୍ଚ ଉପରେ ବସି କଫି ପିଇଲେ । ଲନ୍‌ର ଏଣେ ତେଣେ ମ୍ୟାପଲ୍ ଗଛର ଲୋହିତ ପତ୍ର ବିଛାଡ଼ି ହୋଇ ପଡ଼ିଥିଲା । ଏହି ଗଛ ତଳେ ବସି ସାରା ସହ ସେ କେତେ ଯେ ସ୍ୱପ୍ନ ଦେଖୁନଥିଲେ ! କିନ୍ତୁ ସବୁ ସ୍ୱପ୍ନ ଏହି ମ୍ୟାପଲର ପତ୍ରପରି ବୃନ୍ତଚ୍ୟୁତ ହୋଇ ଯାଇଛନ୍ତି ।

ଲାରାକୁ ହଷ୍ଟେଲରେ ଛାଡ଼ି ସେ ଆଇଲ୍ୟାଣ୍ଡ ପାର୍କରେ ପଶିଲେ । ସପ୍ତାହାନ୍ତ ଦିନମାନଙ୍କରେ ଏହି ପାର୍କଟି ଥିଲା କ୍ରିଷ୍ଟେନ ଓ ସାରାଙ୍କର ବିହରଣସ୍ଥଳ । ଏହାରି ଆଭିନ୍ୟୁରେ ସେ ହାତ ଧରାଧରି ହୋଇ ଚାଲୁଥିଲେ । ଏହାରି ଲତାକୁଞ୍ଜ ମଧ୍ୟରେ ସେ ଶୋଇ ରହୁଥିଲେ ଛନ୍ଦାଛନ୍ଦି ହୋଇ ଦୁଇଟି ସାପ ପରି ।

ସାରାଙ୍କ ଟ୍ରାଭେଲ ଏଜେଣ୍ଟଠାରୁ ଖବର ପାଇଲେ ଯେ ମଧୁଚନ୍ଦ୍ରିକା ଯାପନ ପାଇଁ ସାରା ତାଙ୍କ ନୂତନ ପ୍ରେମିକ ସହ ଯାଇଛନ୍ତି ନାଏଗ୍ରା ।

କ୍ରିଷ୍ଟେନ ନାଏଗ୍ରା ଛୁଟିଲେ । ସାରା ଓ ପିଲାକୁ ନେଇ ସେ ଆଗରୁ ନାଏଗ୍ରା ଯାଇଛନ୍ତି । ନାଏଗ୍ରା ସହରର ଗୋଟିଏ ମାତ୍ର ଆକର୍ଷଣ ଏହାର ଜଳପ୍ରପାତ । ଏହି

ପ୍ରପାତ ଚାରିପଟେ ସବୁ ହୋଟେଲ ଏବଂ ସବୁ ମନୋରଞ୍ଜନର ସ୍ଥାନ । ଲକ୍ଷ ଲକ୍ଷ ପର୍ଯ୍ୟଟକ ଘୂରିବୁଲିଥିଲେ ପ୍ରପାତର ଚାରିକଡ଼େ । କେଉଁଠି ସେ ଖୋଜିବେ ତାଙ୍କୁ ।

ରାତି ଦଶଟା ହେଲା । ପ୍ରପାତରେ ଆଲୋକର ମହୋତ୍ସବ ଆରମ୍ଭ ହେଲା । ଆତସବାଜିରେ ଫାଟିଉଠିଲା ରାତ୍ରିର ଆକାଶ । ଚାରିଆଡ଼େ ଖାଲି କରତାଳି, ହର୍ଷ ଓ ଉଲ୍ଲାସ । ସତେ ଯେମିତି ସେଠି ଜଳ ଦେବଦେବୀଙ୍କର ଚାଲିଥିଲା ମହାରାସ ।

ଟିକିଏ ଦୂରରେ କାରପାର୍କିଂ ପ୍ଲେସ । ସେଠି ହଜାର ହଜାର ଗାଡ଼ି ପାର୍କ କରାଯାଇଥିଲା । ସେଠି ସେ ଠିଆହୋଇ ଘଣ୍ଟାଏ କାଳ ଦେଖିଲେ ।

ନା । ସାରାଙ୍କ ସହ ସାକ୍ଷାତ ହେଲାନି । ଯେଉଁ ହୋଟେଲରେ ସେ ଆଗରୁ ଥିଲେ, ସେଠି ଚେକ୍‌ଇନ୍ କଲେ । ଯେଉଁ ରୁମ୍‌ରେ ଆଗରୁ ଥିଲେ, ସୌଭାଗ୍ୟକ୍ରମେ ସେଠି ବୁକିଂ ମିଳିଗଲା । ସେଠି ବାଲକୋନିରେ ଶୋଇ ସେ ଦୁହେଁ କେତୋଟି ଦିନ ଜଳପ୍ରପାତର ଆଲୋକସଜ୍ଜା ଦେଖୁଥିଲେ ।

ଶୋଇଶୋଇ ଭାବୁଥିଲେ, ତାଙ୍କ ଜୀବନରେ ଏଭଳି ବିପର୍ଯ୍ୟୟ ଆସିଲା କାହିଁକି ? ପକ୍ଷୀ-ଚରିତ୍ରକୁ ଅନୁଧ୍ୟାନ କରୁ କରୁ ସେ ମଣିଷର ମନସ୍ତତ୍ତ୍ୱ ବୁଝିବାରେ ଭୁଲ କଲେ ନା କ'ଣ ?

ନାରୀ ଓ ଲତାର ସାଦୃଶ୍ୟକୁ କବି ଓ ଲେଖକମାନେ ବର୍ଣ୍ଣନା କରିବାର ସେ ଜାଣନ୍ତି । କିନ୍ତୁ ନାରୀ କ'ଣ ଲାଜକୁଳୀ ଲତା ପରି ନ ହୋଇ ଅନ୍ୟ ଇତର ଲତା ପରି ଯାହା ସଂସ୍ପର୍ଶରେ ଆସେ ତାହାରି ଗଳାରେ ଛନ୍ଦି ହୋଇଯାଏ ?

ଅନ୍ତତଃ ଏଭଳି ପ୍ରତିକ୍ରିୟା ସେ ସାରାଙ୍କଠୁ ଆଶା କରିନଥିଲେ । ଅନ୍ତତଃ ଦୁଇଟି ଅବୋଧ ସନ୍ତାନର ଜନନୀଠାରୁ ସେ ଏଭଳି ଆଶା କରିନଥିଲେ ।

ଚିଲିକାରେ ତାଙ୍କର ପ୍ରୋଜେକ୍ଟ କାମ ଅଳ୍ପ ବାକି ଥିଲା । ପ୍ରଥମେ ସେ ଲାରାକୁ ସାଥିରେ ନେଇ ଆସିବେ ବୋଲି ଭାବୁଥିଲେ । କିନ୍ତୁ ତା'ର ଶୀତଦିନ ଛୁଟି ହେବା ପାଇଁ ଏକ ମାସରୁ ଊର୍ଦ୍ଧ୍ୱ କାଳ ବାକି ଥିଲା । ତେଣୁ ତାଙ୍କୁ ଏକା ଫେରିବାକୁ ହେଲା । ସେ ତାକୁ ହଷ୍ଟେଲରେ ଆଉଥରେ ଦେଖାକଲେ । ସେ ଅଶ୍ରୁଳ ବିଦାୟ ବେଳାରେ କ୍ରିଷ୍ଟେନକୁ ସାନ୍ତ୍ୱନା ଦେବାପାଇଁ ଲାରା ମୁହଁରେ ଖାଲି ଛୋଟିଆ ଧାଡ଼ିଟିଏ ଥିଲା—

—''ଲଭ ୟୁ, ଡାଡ୍ ।''

(୭)

ସାରସ ସାରସୀ ଆଉ ସାଇବେରିଆ ଫେରିବାର ନାଁ ବି ଧରୁନଥିଲେ । ଚିଲିକାର ଅନାବିଳ ସ୍ନେହରେ ତାଙ୍କୁ ବାନ୍ଧିହୋଇଗଲା ଭଳି ଲାଗୁଥିଲା । ଚିଲିକାର ଜଳ ତାଙ୍କୁ ଲାଗୁଥିଲା ସୋମରସ ପରି । ଚିଲିକାର ପବନ ଲାଗୁଥିଲା ଏକ ମହୌଷଧି ପରି । ଚିଲିକାର ବୋରଝାଞ୍ଜି ଦଳ ଲାଗୁଥିଲା ତୂଳୀତଳ୍ପ ପରି ।

ନଳବଣରେ ଭରିଥିଲା ଶୈବାଳ, ସିମ୍ପାଳ ଓ ଦୁର୍ବାଦଳ । ପାଣି ଭିତରେ ଫଳୁଥିଲା କନ୍ଦ ଓ ମକରନ୍ଦ । ଚିଲିକାର କଡ଼େ କଡ଼େ ଭର୍ତ୍ତି ହୋଇଥିଲେ ମିରିକାଳି, ମହୁରାଳି । ଆମିଷ, ନିରାମିଷ ସମସ୍ତ ପ୍ରକାର ଖାଦ୍ୟର ଏହା ଥିଲା ଏକ ଅଫୁରନ୍ତ ଭଣ୍ଡାର । ଖାଦ୍ୟ ଅନୁସନ୍ଧାନର ଚିନ୍ତା ଯେତେବେଳେ ନାହିଁ, ସାରସସାରସୀଙ୍କ ହାତରେ ଥିଲା ଅସରନ୍ତି ସମୟ । ତେଣୁ ସେ ଦୁହେଁ ଚିଲିକାର ଚତୁଃପାର୍ଶ୍ୱ, ପାର୍ଶ୍ୱବର୍ତ୍ତୀ ଗାଁ-ଗଣ୍ଡା ଘୂରି ବୁଲୁଥିଲେ । ଏହା ଭିତରେ କେତେଥର ବ୍ରେକଫାଷ୍ଟ କୁଦ, ହନିମୁନ୍ କୁଦ, କାଳିଜାଇ ପାହାଡ଼ ପ୍ରଭୃତି ବୁଲି ଆସିଲେଣି । ତଥାପି ସମୟ ବଳୁଥିଲା । ଆଉ ବୁଢ଼ାବୁଢ଼ୀ କେତେ ବା ଗପିବେ ? ପରସ୍ପର ମଧ୍ୟରେ ନିଜର ଜୀବନ ପୁସ୍ତିକା କେତେଥର ବା ଖୋଲି ଧରିବେ ?

କୁଆଡ଼େ ଗଲେ କ୍ରିଷ୍ଟେନ । ଅନେକ ଦିନ ହେଲା ସେ ଆସି ନାହାନ୍ତି । କରଞ୍ଜ ଗଛ ଉପରେ ବସି ସେ ବେଳେବେଳେ ତାଙ୍କ ପଥକୁ ଚାହିଁ ରହୁଥିଲେ । ସେ ଠିକ୍ କରିଥିଲେ, କ୍ରିଷ୍ଟେନ ବୁଝନ୍ତୁ ନ ବୁଝନ୍ତୁ, ତାଙ୍କୁ କହିବେ ଆଉ ଆମେ ସାଇବେରିଆକୁ

ଫେରିବୁନି । ଶିଥିଳ ହୋଇଗଲାଣି ଆମର ରକ୍ତ । କୋହ୍ଲିଗଲାଣି ଆମର ଡେଣା । ଆମେ ରହିବୁ ଡମରି ତପୋବନରେ ।

କିନ୍ତୁ କ୍ରିଷ୍ଟେନ କାହାନ୍ତି ଯେ !

ତାଙ୍କୁ ଚାହିଁ ଚାହିଁ ପକ୍ଷୀମାନଙ୍କର ଆଖିରୁ ପାଣି ମଲାଣି । କିଛି ପକ୍ଷୀ ଏଭଳି ବ୍ୟସ୍ତ ବିବ୍ରତ ହେଉଥିଲେ ଯେ, ପାଗଳ ହୋଇ ଯିବେ ପରା ।

କ୍ରିଷ୍ଟେନଙ୍କ ଅନୁପସ୍ଥିତି ବ୍ୟତିରେକ ଆଉ ସବୁକିଛି ଠିକ୍‌ଠାକ୍ ଚାଲିଥିଲା । ବଙ୍ଗୋପସାଗରର ପେଟ ଚିରି ସୂର୍ଯ୍ୟ ପ୍ରତିଦିନ ଉଦିତ ହେଉଥିଲେ ପୂର୍ବଦିଗରେ । ଦିନାନ୍ତରେ ଅସ୍ତ ହେଉଥିଲେ ଭାଲେରୀର ଡାଳରେ । ବରକୂଳର ବରଗଛରେ ଲାଲ ଟୁକୁଟୁକୁ ଫଳ ଖାଇବାର ପ୍ରତିଯୋଗିତା ଜାରି ରଖିଥିଲେ ଶୁଆଶାରୀ ଓ ବଣିମାନେ । ପ୍ରଭାତରୁ ଉଠି ସୁମଧୁର ସ୍ୱରରେ ଉଠରେ, ଉଠରେ କହି ଉଦ୍‌ବୋଧନୀ ଗାଉଥିଲା କଳକଣ୍ଠୀ କୁମ୍ଭାଟୁଆ । ଚିଲିକାର ଆକାଶରେ ଦଳଦଳ ହୋଇ ଉଡ଼ିଯାଉଥିଲେ ରୌପ୍ୟକାନ୍ତି ବଳାକା ବାହିନୀ । ମିରିକାଳି, ମହୁରାଳିମାନେ ଆକାଶକୁ ଡେଇଁ ଚନ୍ଦ୍ର ଧରିବାକୁ ଚେଷ୍ଟା କରୁଥିଲେ ।

ସବୁଦିନ ସମାନ ଯାଏନି ।

ଦିନେ ସନ୍ଧ୍ୟାରେ ହଠାତ୍ ସମୁଦ୍ର ଆଡୁ ବତାସ ବହିଲା । ବତାସର ସହଚର ଭାବେ ଆସିଥିଲା ଅଦିନିଆ ବର୍ଷା ।

ଚିଲିକାର ନୀଳ ବିଚିମାଳା ଉପରେ ଅସ୍ତସୂର୍ଯ୍ୟର ହିରଣ୍ମୟ କିରଣର ନୃତ୍ୟକୁ ଉପଭୋଗ କରୁଥିବା ପର୍ଯ୍ୟଟକମାନଙ୍କୁ ନାବିକମାନେ ଚେତାଇଦେଲେ— ''ବାବୁମାନେ ! ଜଲ୍‌ଦି ଫେରିଯିବା ।

ଧୀବରମାନେ ଡଙ୍ଗାର ପାଲ ଓହ୍ଲାଇ, ଜାଲ ଗୋଟାଇ ଦ୍ରୁତ ଗତିରେ ଡଙ୍ଗା ବାହି ଚାଲିଥିଲେ ନିଜ ନିଜ ଗ୍ରାମ ଅଭିମୁଖେ ।

ସ୍ଥାନୀୟ ପକ୍ଷୀମାନେ ଡକାହକା ହୋଇ ଡେଣା ବାଡ଼େଇ ଉଡ଼ିଯାଉଥିଲେ ଚିଲିକା କୂଳର ବୃକ୍ଷଲତାମାନଙ୍କର ଘଞ୍ଚ ପତ୍ରର ପଖିଆ ତଳକୁ ।

ପରିବ୍ରାଜକ ପକ୍ଷୀଙ୍କ ପାଇଁ ଏହା ଥିଲା ଏକ ଭୟାନକ ଅନୁଭୂତି । ସେମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଏଣେ ତେଣେ ଉଡ଼ିଗଲା ବେଳେ କିଛି ଅଭିଜ୍ଞ ପକ୍ଷୀ କହିଲେ— ''ଏହି ଋତୁରେ ବେଳେବେଳେ ଏମିତି ଅନହୁତି ଝଡ଼ ଆସେ । ସ୍ଥଳଭାଗରେ ଖଣ୍ଡପ୍ରଳୟ

ସୃଷ୍ଟି କରେ । ଆମର ବେଶୀ ଡରିବାର ନାହିଁ । ନଳବଣରେ ପେଟେଇ କରି ଶୋଇଯାଅ । ଏ ଝଡ଼ ବହିଯିବ ।''

କିଛି ସମୟ ପରେ ଆକାଶ, ସମୁଦ୍ର, ପୃଥିବୀ, ନଦୀ, ପର୍ବତ ଓ ହ୍ରଦ ଏକାକାର ହୋଇ ଦିଶୁଥିଲେ ଏକ ମହାଶୂନ୍ୟ । ତା ଭିତରେ ଲୀନ ହୋଇ ଯାଉଥିଲେ ଅସ୍ତଗାମୀ ସୂର୍ଯ୍ୟର କିରଣ, କାବ୍ୟତାରାର ଝଲମଲ କାନ୍ତି, ମାଝିର ଉଚ୍ଚାଟ ସଂଗୀତ ଏବଂ ବିହଙ୍ଗମାନଙ୍କର ବୃନ୍ଦଗାନ ।

ରାତିସାରା ଗର୍ଜନ କରୁଥିଲା ପବନ । ସତେ ଯେପରି ସୁଉସୁଉ କରି ଶହଶହ ସରୀସୃପ ଚାଲୁରଖିଥିଲେ ତାଙ୍କ ଭୟାନକ ଐକଗାନ ।

ଚରାଚର ଅପେକ୍ଷା କରିଥିଲା କାଳରାତି ପାହିବାକୁ ।

ରାତି ପାହିଲା । ଏକ ନୂତନ କଳାକାର ପରି ଲାଜେଇ ଲାଜେଇ ପୃଥିବୀର ରଙ୍ଗମଞ୍ଚକୁ ଖରା ଓହ୍ଲାଇଲା ।

ପକ୍ଷୀମାନେ ଗୋଡ଼ଛାଟି, ପକ୍ଷ ବିସ୍ତାର କରି ନଳବଣର ଠାଏ ଠାଏ ଅଳସ ଭାଙ୍ଗୁଥିଲେ ।

ଅଚାନକ... । ଭୁସ ଭୁସ ଭୁସ । ସତ ସତ ସତ । ଶହ ଶହ କଳାପାହାଡ଼ ସତେ ଯେପରି ପାଣିକୁ ଦ୍ୱିଭାଗ କରି ପହଁରି ଆସୁଥିଲେ । ହଅ-ଟି-ଟି... କହି ଆଗେ ଆଗେ ଦୌଡ଼ି ଆସୁଥିଲା ଟେଁ ଟେଇଁଆ ଚଢ଼େଇ । ଆରେ... ଆରେ... ଆରେ—କର୍କଶ ଚିତ୍କାର କରି ଉଡ଼ି ଆସୁଥିଲା ଶଂଖଚିଲ । ପକ୍ଷୀମାନଙ୍କ ଭିତରେ କୋକୁଆଭୟ ଖେଳିଗଲା ।

ସେ ଥିଲା ଏକ ମଇଁଷିର ଦଳ । ପାରିକୁଦରୁ ନଳବଣକୁ ପହଁରି ଆସିଥିଲେ ସେମାନେ । ସଂଖ୍ୟା ଶହେ ସରିକି ହେବ । ଭୁସ୍ ଭାସ, ଖଡ଼ଖାଡ଼, ସଡ଼ସାଡ଼ ଶବ୍ଦ କରି ସେମାନେ ନଳବଣରେ ଖେଦିଗଲେ ପୁରାଣ-ବର୍ଣ୍ଣିତ ତପୋବନମାନଙ୍କରେ ଦୈତ୍ୟମାନଙ୍କ ପରି । ସେମାନେ ନଳ, ସିମ୍ପାଳ, ଦୁବଘାସ ପ୍ରଭୃତି ଚରିଗଲେ ନଅଁକିଆ କାଙ୍ଗାଳଙ୍କ ପରି । କେତେକ ଦୁଷ୍ଟ ମଇଁଷିଙ୍କ ଟିପା ଢଂ ଢଂ ଶବ୍ଦ କରି ଆହୁରି ବେଶୀ ଭୟ ଉଦ୍ରେକ କରୁଥିଲା ।

ସାରସ ବିଗୁଲ ବଜାଇଲା । ପକ୍ଷୀମାନଙ୍କୁ ଚେତାବନୀ ଦେଇ କହିଲା— ''ଯଥାଶୀଘ୍ର ପକ୍ଷୀମାନେ ପାଣି ଭିତରେ ପଶିଯାଅ । ନ ହେଲେ ଅନ୍ୟ କୁଦମାନଙ୍କୁ ଉଡ଼ିଯାଅ । ପଳାୟନ ଛଡ଼ା ଅନ୍ୟ ପନ୍ଥା ନାହିଁ ।''

କିଛି ପକ୍ଷୀ ଉଡ଼ିଗଲେ ଝାଉଁ ଓ ବାଗୁଲା ବଣକୁ । ଅନ୍ୟମାନେ ପାଣିରେ ପହଁରି ପହଁରି ଦେଖୁଥିଲେ ଏ ଛାରଖାର ଦୃଶ୍ୟ ।

ଟାୱାରରେ ଜଗୁଆଳିଙ୍କ ସଂଖ୍ୟାଥିଲା ନଗଣ୍ୟ । ସେମାନେ କିଛି ସମୟ ହୋ ହୋ କରି କିଛି ଫାଙ୍କା ଆୱାଜ ସୃଷ୍ଟି କଲେ ମାତ୍ର । ଦୁଇଜଣ ଖବର ଦେବାକୁ ଡଙ୍ଗାରେ ଛୁଟିଲେ ।

ନଳବଣ । ପ୍ରାୟ ଦଶ ବର୍ଗ କିଲୋମିଟରର ଏକ ବିଶାଳ ଭୂଖଣ୍ଡ । ଚାହୁଁ ଚାହୁଁ ଛାରଖାର ହୋଇଗଲା । ଦଳାଚକଟାରେ କିଛି ଅସୁସ୍ଥ, ଦୁର୍ବଳ ପକ୍ଷୀ ମଧ୍ୟ ପ୍ରାଣ ହରାଇଲେ ।

ପେଟ ଭର୍ତ୍ତି ହେବା ପରେ କିଛି ମଇଁଷି ଲାଞ୍ଜ ଟେକି ପୁରୀଷୋତ୍ସର୍ଗ କଲେ । କିଛି ମଇଁଷି ଶିଙ୍ଗକୁ ଶିଙ୍ଗ ଘଷି କୁସ୍ତି କସରତରେ ବ୍ୟାପୃତ ହେଲେ । କିଛି ମଇଁଷି ବଛାମାନଙ୍କୁ ଛାଡ଼ି ଆସିଥିବାରୁ ଭେମାରଡ଼ି ଛାଡ଼ିଲେ । ଆଉ କିଛି ନାଳ ମାନଙ୍କରେ ବେଧଡ଼କ ଗଡ଼ିଲେ । ସେଇଠି ଆଖି ବୁଜି ରୋମନ୍ଥନ କରିବାରେ ନିଜକୁ ନିୟୋଜିତ କଲେ ।

କ୍ରିଷ୍ଟେନ ଗଲେ କୁଆଡ଼େ ଯେ ! ସବୁରି ମୁହଁରେ ଏହି ଗୋଟିଏ ପ୍ରଶ୍ନବାଚୀ ।

ପାରିକୁଦରୁ ମଇଁଷିଆଳମାନେ ଆସି ଲମ୍ବ ଲମ୍ବ ବାଉଁଶ ବାଡ଼ିରେ ପିଟିପିଟି ମଇଁଷିମାନଙ୍କୁ ଫେରାଇ ନ ନେବା ଯାଏ ସେମାନେ ପାକୁଳି ରୂପକ ପାଇଟିରେ ବ୍ୟସ୍ତ ଥିଲେ ।

ଶତାଧିକ ମତ୍ତ ମହିଷଙ୍କର ନଳବନ ଦଳନ ସାରସ ସାରସୀଙ୍କ ଅସ୍ଥିମଜ୍ଜାରେ ଭୟ ସଞ୍ଚାର କରିବା ସ୍ୱାଭାବିକ ଥିଲା । ତା'ପରେ ସେ ଦେଖିବାକୁ ପାଇଲେ, ଦିନକୁ ଦିନ ପକ୍ଷୀଙ୍କ ସଂଖ୍ୟା କମି କମି ଯାଉଛି । କିଛି ପକ୍ଷୀଙ୍କର ପ୍ରଭାତର କୂଜନ ଶୁଭୁଛି । କିନ୍ତୁ ସନ୍ଧ୍ୟାରେ ଆଉ ଦର୍ଶନ ମିଳୁନି । ବୋଧହୁଏ ଆଖପାଖ ଗାଁରେ ତାଙ୍କୁ ପାଶ ପକାଇ ଧରି ନେଉଛନ୍ତି । ରାତିରେ ନଳବଣରେ ମଧ୍ୟ ବେଳେବେଳେ ବନ୍ଧୁକର ଶବ୍ଦ ଶୁଭୁଛି ।

ସାରସ ସାରସୀକୁ କହିଲା–''ନା, ଏ ଜାଗା ବୋଧେ ଆଉ ନିରାପଦ ନୁହେଁ । ଚାଲ ଅନ୍ୟ ସ୍ଥାନ ଖୋଜିବା ।''

–"ସାଇବେରିଆ ଫେରିଯିବା କି ?"

–"ସାଇବେରିଆ ଚାହିଁଲେ ବି ଏବେ ଫେରିପାରିବାନି ।"

–"ତେବେ ଏବେ କ'ଣ କରିବା ?"

–"ଚାଲ ଏଠି ଅନ୍ୟ କୁଦକୁ ଚାଲିଯିବା ।"

–"ସେଭଳି ନିରାପଦ ସ୍ଥାନ ତମ ଆଖି ଆଗରେ ଅଛି ?"

–"ବୋଧହୁଏ କାଳିଜାଈ ପାହାଡ଼ ନିରାପଦ ହେବ । ସେଠି ଅହରହ ଅସଂଖ୍ୟ ଭକ୍ତଙ୍କ ଭିଡ଼ । ସେଠି ମୟୂର, କୁକ୍କୁଟ, ଛାଗଳ ପ୍ରଭୃତି ଜୀବଜନ୍ତୁ ନିର୍ଭୟରେ ବୁଲୁଛନ୍ତି । ଆଉ ଯୁଆଡ଼େ ଦୌରାତ୍ମ୍ୟ କଲେ ବି ଦୁର୍ବୃତ୍ତମାନେ ଦେବୀ ପୀଠକୁ ପଶିବାକୁ ଡରିବେ ।"

–"ହଁ, ଠିକ କହୁଛ । ସେଠି ବୋଧେ ଠାକୁରାଣୀଙ୍କ ଛତ୍ରଛାୟା ତଳେ ଆମେ ସୁରକ୍ଷିତ ରହିବା ।"

ସାଇବେରିଆକୁ ଏବେ ଏ ନ ଥିଲା ଫେରିବାର ଋତୁ । ଜନ୍ମଭୂମି କଥା ମନେ ପଡ଼ିଲେ ବି ସେମାନେ ନାଚାର ।

କାଳିଜାଈ ମନ୍ଦିରର ପଛପଟେ ଘଞ୍ଚ ଜଙ୍ଗଲ ଥିଲା । ଜଳଧାରକୁ ଲାଗି ଶରବଣ ଓ ବେତର ବଣ । ତାକୁ ଦେଖି ଲେନା ନଦୀ କୂଳର ବେତର ବଣ ତାଙ୍କର ମନେପଡିଲା ।

ଜଳଦର୍ପଣରେ ନିଜ ନିଜ ମୁହଁ ଦେଖିବାକୁ ନଇଁ ଯାଉଥିଲେ କାଶତଣ୍ଡୀର ଚଅଁରଗୁଡ଼ିକ । ସେହି କାଶତଣ୍ଡୀ ବଣର ଅଭ୍ୟନ୍ତରରେ ନରମ ଘାସ ଶେଯରେ ସାରସସାରସୀ ନୂଆ ଘର ବସାଇଲେ ।

କ୍ରିଷ୍ଟେନ୍ କାନାଡ଼ାରୁ ଫେରିଲେ ଭଗ୍ନ ମନୋରଥ ନେଇ । ସାରାଙ୍କ ସହ ସାକ୍ଷାତ ହେଲା ନାହିଁ ।

ଆସୁ ଆସୁ ଆଉଟ ହାଉସ୍‌ର ଶୁକପକ୍ଷୀ ତାଙ୍କୁ ସ୍ୱାଗତ କଲା–"ହରେ କୃଷ୍ଣ, ହରେ କୃଷ୍ଣ ।" ଟିକିଏ ପରେ ପୁଣି–"ଚକ୍ରଧର, ପକ୍ଷୀଜାତିକୁ ଉଦ୍ଧାର କର ... ।"

ପାନ୍ଥନିବାସର ଆଟେଣ୍ଡାଣ୍ଟ ନବୀନର ଶୁଆ ସେଇଟି । ନବୀନ ଠାରୁ ଏଭଳି

କିଛି ବାକ୍ୟ ଶୁଣି ଶୁଣି ଘୋଷି ରଖିଥାଏ । କେହି ସେହିବାଟେ ଗଲେ ସେ ତା'ର ବାଗ୍ମିତା ଦେଖାଏ ।

ସନ୍ଧ୍ୟାବେଳୁ ସେ ଶୋଇପଡ଼ିଥିଲେ । ଦୀର୍ଘ ପ୍ଲେନ ଯାତ୍ରାର କ୍ଳାନ୍ତି । ଜିନିଷପତ୍ର ଖୋଲିବାକୁ ମଧ୍ୟ ଉଚିତ ମନେ କରି ନଥିଲେ ।

ପାହାନ୍ତା ପ୍ରହରକୁ ବାଲକୋନିକୁ ଗଲେ । ଚାରିଆଡ଼େ ଘନ ତମିସ୍ରା । କୁହୁଡ଼ି ସେ ତମିସ୍ରାକୁ ଆହୁରି କରିଥିଲା ସାନ୍ଦ୍ର । ଦେହରେ ଚାଦର ଘୋଡ଼େଇ ସେମିତି ବସିରହିଲେ । ନଡ଼ିଆ ଗଛର ବାହୁଙ୍ଗାର ବେହେଲାରେ ପବନ ଝଙ୍କାର ତୋଳୁଥିଲା । ତାଙ୍କୁ ବୋଧେ ଶୁଣାଉଥିଲା—ତୁମେ ଅଖିଳର ହେବାକୁ ଚାହିଁ ଏ କ'ଣ କଲ ? ତୁମେ ନିଖିଳର ମନ ଜୟ କରିବାକୁ ନିଜ ଲୋକଙ୍କୁ ପର କରିଦେଲ ?

ମନ ଭିତରକୁ ଯାବତୀୟ ଦୁଶ୍ଚିନ୍ତା ପଶିଲା । ସାରା ଏବେ ଥିବେ ରବର୍ଟର ବାହୁ-ବନ୍ଧନରେ । ରେଜେଇ ଭିତରେ ପଶି ସେ କ'ଣ ଦେଖୁଥିବେ ଅସୁମାରି ସ୍ୱପ୍ନ ? ତାଙ୍କ ଦେହ ଶିରଶିରେଇ ଉଠିଲା । ସେ ପ୍ରକୃତିସ୍ଥ ହେଲେ । ମନେ ପଡ଼ିଲା, ନା ଏବେ କାନାଡ଼ାରେ ରାତ୍ରି ହୋଇନଥିବ । ଦିନ ହୋଇଥିବ ।

କିଛିଦିନ ହେଲା କ୍ରିଷ୍ଟେନଙ୍କର ମନ ଭଲ ରହୁନଥିଲା । ଚିଲିକା ଭିତରକୁ ଏକାକୀ ଯିବାକୁ ତାଙ୍କୁ ଇଚ୍ଛା ହେଉନଥିଲା । ସୌଭାଗ୍ୟକ୍ରମେ ସେଦିନ ତାଙ୍କ କଟେଜକୁ ଅରୁଣ ଆସିଲେ ।

—''ମୁଁ ଆପଣଙ୍କୁ ଆଉଥରେ ଭେଟିବାକୁ ଆସିଥିଲି । ଆପଣ କାନାଡ଼ା ଯାଇଥିଲେ । ସେଠି ସବୁ ଠିକ୍ ଅଛି ତ ?''

—''ଓଃ - ଇଏସ୍ । ହାଓ ଆର ୟୁ ?''

—''ଆଇ ଆମ ଫାଇନ୍ । ଆଜି ଚାଲନ୍ତୁ ଗୋଟିଏ ଗାଁକୁ ଯିବା । ସେଠି ଅନେକ ଲୋକ ଏକାଠି ହେବେ । ଆମେ ପରିବେଶ ସମ୍ପର୍କରେ ଲୋକଙ୍କୁ ବୁଝାଇବା ।''

ଇଚ୍ଛା ନ ଥିଲେ ବି କ୍ରିଷ୍ଟେନ ଗଲେ ।

ସେହି ଗାଁରେ ଅଷ୍ଟପ୍ରହରୀ ସଂକୀର୍ତ୍ତନ ଚାଲିଥିଲା । ଦଳ ଦଳ କରି ସଂକୀର୍ତ୍ତନ ଦଳ ଖୋଳ କରତାଳ ବଜାଇ ଆସୁଥାନ୍ତି । 'ହରେକୃଷ୍ଣ, ହରେରାମ, ରାମ ରାମ ହରେ ହରେ' ଧ୍ୱନିରେ ଗାଁ ଦାଣ୍ଡ ଉଚ୍ଛୁଳି ଉଠୁଥିଲା । ଗୋଟିଏ ଦଳର କଣ୍ଠସ୍ୱର

କର୍କଶ ଏବଂ ହାତଗୋଡ଼ ଅବଶ ହେଲା ପରେ ଅନ୍ୟ ଦଳ ସଂକୀର୍ତ୍ତନ ଜାରି ରଖନ୍ତି ।

କ୍ରିଷ୍ଟେନ ଓ ଅରୁଣ ଛାମୁଡ଼ିଆ ତଳେ ବସିଲେ । ''ଇଣ୍ଟରନେସନାଲ ସୋସାଇଟି ଫର କ୍ରିଷ୍ଣା କନ୍‌ସସ୍‌ନେସ୍''ର ଶ୍ରଦ୍ଧାଳୁ ମାନେ ତାଙ୍କ ଦେଶରେ ଏଭଳି ବିହ୍ୱଳିତ ହୋଇ ନାଚିବାର ସେ ଦେଖିଛନ୍ତି । ତାଙ୍କୁ ମଧ୍ୟ ଅରୁଣ ସେ ସଂକୀର୍ତ୍ତନରେ ସାମିଲ ହେବାକୁ କହିଲେ ।

ଅପରାହ୍ଣରେ ପଂକ୍ତିଭୋଜନ ହେଲା । ସେଥିରେ ମଧ୍ୟ ଦୁହେଁ ଯୋଗ ଦେଲେ ।

ଏକ ମିଶନାରୀର ଅଦମ୍ୟ ଉତ୍ସାହ ନେଇ ସେ ଏବେ ଚିଲିକାର ରକ୍ଷଣାବେକ୍ଷଣ ପାଇଁ କାର୍ଯ୍ୟ କରୁଥିଲେ । ଚିଲିକା ଥିଲା ତାଙ୍କର ପ୍ରେମିକା ପରି । ତେଣୁ କୌଣସି ସ୍ଥାନରେ ଚିଲିକା ସମ୍ପର୍କିତ ଆଲୋଚନା ହେଲାବେଳେ ସେ ପୁଲକିତ ହୋଇଉଠୁଥିଲେ । ସାଧାରଣତଃ ସ୍ୱଳ୍ପଭାଷୀ ଭାବେ ପରିଚିତ ସେ ପ୍ରଗଳ୍‌ଭ ପାଲଟି ଯାଉଥିଲେ ।

ପଂକ୍ତିଭୋଜନ ପରେ ସେ ଗ୍ରାମର ପକ୍ଷୀ-ସଂରକ୍ଷା ସମିତିର ସଦସ୍ୟଙ୍କ ନିକଟରେ ଡଃ ସଲିମ ଅଲ୍ଲୀଙ୍କ ଉକ୍ତିକୁ ଦୋହରାଉଥିଲେ—''ରଙ୍ଗବେରଙ୍ଗ ପର, ସୁଲଳିତ କଣ୍ଠସ୍ୱର ଏବଂ ଲୀଳାୟିତ ଗତି ଯୋଗୁଁ ପକ୍ଷୀମାନେ ଜୀବନ ଓ ସୌନ୍ଦର୍ଯ୍ୟର ପ୍ରତୀକ । ମନୁଷ୍ୟର ଜୀବନ ନିର୍ବାହଣର ଏବଂ ଜୀବନକୁ ଅର୍ଥପୂର୍ଣ୍ଣ କରିବା ଦିଗରେ ସେମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ।''

''ତେଣୁ ଗୁଜୁରାଟର ବିରଳ କୃଷ୍ଣସାରଙ୍କୁ ବିଷ୍ଣୋଇ ସଂପ୍ରଦାୟ ଯେପରି ସୁରକ୍ଷା ପ୍ରଦାନ କରିଛନ୍ତି, ମୟୂରମାନଙ୍କୁ ରାଜସ୍ଥାନର ଗ୍ରାମବାସୀମାନେ ଯେପରି ଅଭୟ ଦେଇଛନ୍ତି, ଏଠି ମଧ୍ୟ ପକ୍ଷୀଙ୍କ ରକ୍ଷଣାବେକ୍ଷଣ ପାଇଁ ସେଭଳି ପ୍ରତିବଦ୍ଧତା ଆବଶ୍ୟକ ।''

—''ଏ ରାଜ୍ୟ ଏକ ଧର୍ମପରାୟଣ ରାଜ୍ୟ । ଏଠି ବାର ମାସରେ ତେର ପୂଜା ହୁଏ ବୋଲି ମୁଁ ଶୁଣିଛି । କେଉଁଠି ନାଗପୂଜା ହେଉଛି ତ କେଉଁଠି ବୃଷଭ, ମର୍କଟମାନଙ୍କର ପୂଜା ହେଉଛି । ପକ୍ଷୀମାନଙ୍କ ପାଇଁ କୌଣସି ପୂଜା ଅନୁଷ୍ଠାନ ମୋ ଆଖିରେ ପଡ଼ିନାହିଁ । ଆପଣମାନେ ଚିଲିକାରେ ଏକ ପକ୍ଷୀ-ମହୋତ୍ସବ ଆରମ୍ଭ କରନ୍ତୁ । ତା'ହେଲେ ଜନସଚେତନତା ବଢ଼ିବ । ୱାଇଲ୍‌ଡ ଲାଇଫ୍ ଆକ୍ଟ ପ୍ରଣୟନ ହୋଇଗଲେ କାମ ସରିଗଲା ବୋଲି ଭାବିବା ଭୁଲହେବ ।''

ତାଙ୍କର ଏହି ପ୍ରସ୍ତାବକୁ ସେଠିକାର ସ୍ୱେଚ୍ଛାସେବୀମାନେ ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରିଥିଲେ ।

ସନ୍ଧ୍ୟାରେ ନିଜର ଡଙ୍ଗାକୁ ଫେରିଲା ବେଳେ ଚିଲିକା କୂଳରେ ଏକ ସୋଲ ବଣରେ ସେ କିଛି ଚବ୍ ଚବ୍ ଶବ୍ଦ ଆସୁଥିବାର ଶୁଣି ସେଆଡ଼େ ଚାହିଁଲେ । ଦୁଇଟି ତରୁଣ ସେଠି ଆଣ୍ଠେଇପଡ଼ିଥିଲେ ।

—''କ'ଣ କରୁଛ ?''—ଉଚ୍ଚ ସ୍ୱରରେ ଅରୁଣ ପଚାରିଲେ ।

କୌଣସି ଉତ୍ତର ନ ଦେଇ ସେ ଦୁହେଁ ଜାଗା ଛାଡ଼ି ପଳାୟନ କଲେ । କ୍ରିଷ୍ଟେନ ସେମାନଙ୍କର ଅନୁଧାବନ କଲେ । ସେ ଦୁହେଁ ହାତରେ ଧରିଥିବା ବାଉଁଶ ବାଡ଼ି ତାଙ୍କୁ ପ୍ରତିରୋଧ କରିବା ପାଇଁ ଫିଙ୍ଗିଲେ । ବାଡ଼ିଟି ତାଙ୍କ କଟିରେ ବାଜିଲା ଏବଂ ସେ ଆହତ ହୋଇ ବସିପଡ଼ିଲେ ।

''କ'ଣ ହେଲା ?''—ବ୍ୟସ୍ତହୋଇ ପଚାରିଲେ ଅରୁଣ ।

ଉତ୍ତର ମିଳିଲା—''ଇଟ୍ ଇଜ୍ ନଥିଂ ।''

ଅରୁଣ ତାଙ୍କୁ ଦେଖି ଭାବୁଥିଲେ, ସାଧନା ପଥରେ ଏହି ବିଦେଶୀମାନେ ବ୍ୟକ୍ତିଗତ ନିରାପତ୍ତା ପ୍ରତି ଯେତିକି ଉଦାସୀନ, ଶାରୀରିକ କ୍ଲେଶ ପ୍ରତି ସେତିକି ବିମୁଖ ।

ଏ ସ୍ଥିତପ୍ରଜ୍ଞ କ୍ରିଷ୍ଟେନଙ୍କୁ ଦେଖି ସେ ଆଶ୍ଚର୍ଯ୍ୟ ହେଉଥିଲେ । ବାଲୁଗାଁ ହୋଟେଲରେ ତାଙ୍କ ପ୍ରତି ମରଣାନ୍ତକ ଆକ୍ରମଣ ହୋଇଥିଲେ ବି ସେ ବିଚଳିତ ହୋଇ ନାହାନ୍ତି । ଆଜି ଆହତ ହେଲାପରେ ମଧ୍ୟ କହୁଛନ୍ତି, କିଛି ହୋଇନାହିଁ । କାହିଁ କାନାଡ଼ା ! କାହିଁ ଓଡ଼ିଶା ! ଦିନ ଦିନ ଧରି ଚିଲିକାର ପକ୍ଷୀ-ଜଗତ ପାଇଁ କାମରେ ଲାଗିଛନ୍ତି । କାହା ପ୍ରତି କ୍ରୋଧ ନାହିଁ । କାହା ପ୍ରତି ଅସୂୟା ନାହିଁ । ଏକ ବିଦେଶୀ ଆଗନ୍ତୁକଙ୍କ ବେଶରେ ସେ ଲାଗୁଥିଲେ ଆଉ ଏକ ବୋଧିସତ୍ତ୍ୱ ପରି ।

—''ଏମାନେ କ'ଣ ମାଛ ଧରୁଥିଲେ ?''

—''ନା । ପକ୍ଷୀଙ୍କ ପାଇଁ ଫାଶ ପକାଉଥିଲେ ।''

—''ଏଣେ ଗାଁରେ ସଂକୀର୍ତ୍ତନ ଚାଲିଛି । ଏଠି ପକ୍ଷୀଧରା ଚାଲିଛି ?''

—''ଏଠି ବିରାଡ଼ିବୈଷ୍ଣବଙ୍କର ଅଭାବ ନାହିଁ ।''

—''ବିରାଡ଼ି ବୈଷ୍ଣବ ମାନେ ?''

ଡଙ୍ଗା ଚାଲିଲା ପରେ ଅରୁଣ କହିଲେ—''ଆପଣଙ୍କୁ ଗୋଟିଏ ଗପ କହୁଛି । ଥରେ ଏମିତି ଗାଁରେ ଏକ ପଂକ୍ତିଭୋଜନକୁ ଜଣେ ବାବା ଆସିଥିଲେ । ହାତରେ

କମଣ୍ଡଳୁ, କାନ୍ଧରେ କୋଥଳି । ତାଙ୍କ ସହ ଗ୍ରାମବାସୀମାନେ ଭୋଜନରେ ବସିଥିଲେ । ସେ କଥା କଥାକେ ''ଗୋବିନ୍ଦ ଗୋବିନ୍ଦ'' ଉଚ୍ଚାରଣ କରୁଥାନ୍ତି । କିଛି ସମୟ ପରେ ତାଙ୍କ କୋଥଳି ଭିତରେ ଶିହରଣ ସୃଷ୍ଟି ହେଲା । ତା'ର କିଛି ସମୟ ପରେ କୋଥଳିଟି ଚାଲିବାକୁ ଆରମ୍ଭ କଲା ।

—ଦେଖ ତ ଗୋବିନ୍ଦର ଗତି । ମୁଣାକୁ ଧରି ଚାଲିଛନ୍ତି—ବାବା ଗାଇଲେ ।

କିଛି ସମୟ ପରେ ମୁଣାରୁ ଦୁଇଟି କଂକଡ଼ା ବାହାରିଲା ପରେ ତାଙ୍କର ମୁଖା ଖୋଲିଗଲା । ଏହିଭଳି ଲୋକଙ୍କୁ ବିରାଡ଼ି ବୈଷ୍ଣବ କୁହାଯାଏ । ଏଠି ଠକି ଭଣ୍ଡି ଖାଇବା ପାଇଁ ଅନେକ ବାବା ଦେଖିବାକୁ ମିଳନ୍ତି । ଖାଲି ସେଥିପାଇଁ ଏଠି ଚାରିଆଡ଼େ ମନ୍ଦିର ଏବଂ ମନ୍ଦିର । ସେଠି ଧର୍ମକୁ ଆଖି ମିଟିକା ମରା ଚାଲିଛି । ସେଠି କିଛି ବସିଖିଆ, କର୍ମକାତର ଲୋକଙ୍କ ପାଇଁ ମାଗଣାରେ ଅନ୍ନସଂସ୍ଥାନ ହେଉଛି ।''

ସେଦିନ ସନ୍ଧ୍ୟାରେ ସେ ଦୁହେଁ ଏକାଠି ବସି ଚା' ପିଉଥିବା ସମୟରେ ଆଲୋଚନା ଜାରି ରଖିଥିଲେ ।

କ୍ରିଷ୍ଟେନ କହିଲେ—''ମୁଁ ଭାବୁଛି, ଦାରିଦ୍ର୍ୟ ଏ ରାଜ୍ୟର ଅଧିବାସୀଙ୍କ ସଂକୀର୍ଣ୍ଣତାକୁ ବଢ଼ାଉଛି । ଆରିଷ୍ଟଟଲ କହିଥିଲେ—ଧନ ହିଁ ମଣିଷର ମନକୁ ପ୍ରଶସ୍ତ କରେ । ତା' ହୃଦୟରେ ଦୟା ଓ ଦାକ୍ଷିଣ୍ୟ ଭରିଦିଏ । ସେଥିପାଇଁ ଅଷ୍ଟ୍ରେଲିଆରେ ଗୋଟିଏ ଜଙ୍ଗଲକୁ କିଣି ଜଣେ ଲୋକ କୋକିଶିଆଳଙ୍କ ସଂରକ୍ଷଣ କରୁଛନ୍ତି । ଆମେରିକାରେ ଜଣେ ଧନଶାଳୀ ବ୍ୟକ୍ତି ଫାର୍ମ କରି ଶାଗୁଣାମାନଙ୍କର ସଂରକ୍ଷଣ କରୁଛନ୍ତି ।''

—''ସଂସ୍କୃତ କଥାକାର ବିଷ୍ଣୁଶର୍ମାଙ୍କ ଉକ୍ତି ସେହିପରି : ବୁଭୁକ୍ଷିତଃ କିଂ ନ କରୋତି ପାପମ୍ । କ୍ଷୀଣାଃ ଜନାଃ ନିଷ୍କରୁଣା ଭବନ୍ତି । ଅର୍ଥାତ୍ ଭୋକିଲା ଲୋକମାନେ ଯେକୌଣସି ପାପ କରିବାକୁ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ । ଏହା ସତ୍ୟ ଯେ ଅଭାବ ମଣିଷର ସ୍ୱଭାବ ନଷ୍ଟ କରେ । କିନ୍ତୁ ଆପଣ କ'ଣ ଭାବୁଛନ୍ତି, କେବଳ ଅଭାବୀ ଲୋକମାନେ ଏଥିପାଇଁ ଦାୟୀ ? ମୁଁ ଭାବୁଛି, କିଛି ସ୍ୱଚ୍ଛଳ ଅବିବେକୀ ଲୋକଙ୍କର ଭୋଗ-ସର୍ବସ୍ୱ ମନ ଏବଂ ଅବିମୃଶ୍ୟକାରିତା ଏଥିପାଇଁ ସମାନ ଭାବେ ଦାୟୀ । ଭୋଗ ସେମାନଙ୍କର ଜୀବନର ମୂଳମନ୍ତ୍ର । ପ୍ରତ୍ୟେକ ପ୍ରକାର ପଶୁ ପକ୍ଷୀଙ୍କ ମାଂସର ସ୍ୱାଦ ନେବା ପାଇଁ ତାଙ୍କର ଏକ ଉଦ୍ଭଟ ଇଚ୍ଛା । ଏଭଳି କିଛି ଲୋକ ବି ଅଛନ୍ତି, ଯେ ନିରୀହ ପକ୍ଷୀଙ୍କୁ ହତ୍ୟା କରି ବେଶ ଆନନ୍ଦ ପାଆନ୍ତି । ଭରତପୁର ପକ୍ଷୀ ଅଭୟାରଣ୍ୟରେ ଥିବା ଫଳକରେ ମୁଁ ପଢ଼ିଥିଲି ଯେ ଲର୍ଡ ଲିନ୍‌ଲିଥିଗୋ ଗୋଟିଏ ଦିନରେ ଚାରି ହଜାର ଦୁଇ ଶହ ତେସ୍ତରିଟି ଦୁବହଂସ ଓ ବତକ ଗୁଳିକରି ମାରି

ରେକର୍ଡ ସୃଷ୍ଟି କରିଥିଲେ । ମନୁଷ୍ୟର ଏହି ଅବିମୃଶ୍ୟକାରିତା ଯୋଗୁଁ ଡୋଡୋ ପରି ନିରୀହ ପକ୍ଷୀ ପୃଥିବୀରୁ ବିଦାୟ ନେଇଗଲେ । ଚୀନ୍‌ରେ ସରକାରଙ୍କ ଅବିବେକିତା ଯୋଗୁଁ ଘରଚଟିଆ ଚଢ଼େଇ ନିଶ୍ଚିହ୍ନ ହୋଇଗଲେ ।''

ଅରୁଣ ଭାବବିହ୍ୱଳ ହୋଇଯାଇଥିଲେ ।

କ୍ରିଷ୍ଟେନ ତାଙ୍କୁ ସମର୍ଥନ କରି କହିଲେ–''ୟୁ ଆର୍ ରାଇଟ୍ ।''

ସେ କଥାର ମୋଡ଼ ବଦଳାଇ ପଚାରିଲେ–''କିନ୍ତୁ ଦିନେ ଏ ରାଜ୍ୟ ଐଶ୍ୱର୍ଯ୍ୟଶାଳୀ ଥିଲା ନା ? ନୌବାଣିଜ୍ୟରେ ବାହାରୁ ସାଧବମାନେ ସୁନା ରୂପା ମୋତି ମାଣିକ୍ୟ ନେଇ ଆସୁଥିଲେ ବୋଲି ମୁଁ ଶୁଣିଛି ।''

–''ସାଧବପୁଅମାନେ ବୋହିତ୍ର ନେଇ ସିଂହଳ ଯାଉଥିଲେ ବୋଲି ମୁଁ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ପଢ଼ିଛି । କିନ୍ତୁ ମୋରବିଶ୍ୱାସ ହୁଏନା । ଏ ରାଜ୍ୟର ଲୋକେ ଦୂର ଦେଶକୁ ଯିବା ପାଇଁ ଡରନ୍ତି । କେଉଁଠି ପାନ ଦୋକାନଟିଏ କରି ଗାଁରେ ବସିବେ କିନ୍ତୁ ମେହନତ କରିବା ପାଇଁ ଦୂର ଜାଗାକୁ ଯିବେନି । ଏଠି ଉଦ୍‌ଯୋଗର ଘୋର ଅଭାବ ।''

–''ଏଥିର କାରଣ କ'ଣ ହୋଇପାରେ ?''

–''ତା' ମୁଁ କହିପାରିବି ନାହିଁ । କିନ୍ତୁ ଏଠି ଜାତୀୟ ଚରିତ୍ରର ଘୋର ଅଧଃପତନ ଘଟିଛି ।''

–''ପ୍ରତିକାର ?''

–''ଏ ରାଜ୍ୟର ପ୍ରଗତି ପାଇଁ ଆବଶ୍ୟକ ଦ୍ରୁତ ଶିଳ୍ପାୟନ । ତା' ସଙ୍ଗେ ସଙ୍ଗେ ପର୍ଯ୍ୟଟନର ବିକାଶ । ପର୍ଯ୍ୟଟନସ୍ଥଳର ବହୁବିଧତା ଏ ରାଜ୍ୟରେ ଯେପରି ଅଛି, ଅନ୍ୟ କୁତ୍ରାପି ନାହିଁ । ନଦୀ, ନଦ, ହ୍ରଦ, ସମୁଦ୍ର, ମାଇଲ୍ ମାଇଲ୍ ବ୍ୟାପ୍ତ ବେଳାଭୂମି, ଅନନ୍ୟ କାରୁକାର୍ଯ୍ୟ ଖଚିତ ଅସଂଖ୍ୟ ମନ୍ଦିରମୟ ଧର୍ମପୀଠ, ଆଦିମ ଅଧିବାସୀ, ବନ୍ୟ ପଶୁ ପକ୍ଷୀ ପୂର୍ଣ୍ଣ ବଣ ଜଙ୍ଗଲ । ଏଠି ସବୁକିଛି ଅଛି । ପର୍ଯ୍ୟଟନ ସ୍ଥଳଗୁଡ଼ିକର ଭିତ୍ତିଭୂମି ପ୍ରସ୍ତୁତ କରି ଏ ଶିଳ୍ପକୁ ପ୍ରୋତ୍ସାହନ ଦେଲେ ସୁଇଜରଲ୍ୟାଣ୍ଡ ପ୍ରଭୃତି ଦେଶ ଭଳି ଏ ରାଜ୍ୟର ଅର୍ଥନୀତି ପର୍ଯ୍ୟଟନ ବଳରେ ଦୃଢ଼ୀଭୂତ ହେବ ।''

ସେଦିନ ପାହାନ୍ତା ପ୍ରହରକୁ ଟେଁଟେଇଁଆ ପକ୍ଷୀର ଚିତ୍କାର ଶୁଭିଲା । ହ...ଟି...ଟି...। ହ...ଟି...ଟି... । ଅବିରତ । ବଡ଼ କର୍କଶ ସେ ଚିତ୍କାର । ହଠାତ

ତାଙ୍କର ନିଦ ଭାଙ୍ଗିଗଲା । ସେ ସ୍ଥାନୀୟ ଲୋକଙ୍କ ଠାରୁ ଶୁଣିଥିଲେ, ରାତିରେ ଏ ପକ୍ଷୀର ବିକଳ କ୍ରନ୍ଦନ ମୃତ୍ୟୁର ସୂଚନା ଦିଏ । ଏ ଏକ ଅମଙ୍ଗଳିଆ ପକ୍ଷୀ । ସେ ଚିନ୍ତାକୁ ମନରୁ ଦୂର କରି, ଥିସିସ୍ ଲେଖିବାରେ ମନ ଦେଲେ ।

କର-ର-ର-ଓ-ଓ-ଓ—''କୁଆଡ଼େ ଗଲକି ?''

ଅନେକ ବେଳୁ ସାରସ ସାରସୀକୁ ବ୍ୟତିବ୍ୟସ୍ତ ହୋଇ ଖୋଜୁଥିଲା ।

ସାରସୀର ଦର୍ଶନ ମିଳୁନଥିଲା । କାଳିଜାଇ ପାହାଡ଼ର ଅନ୍ଦି କନ୍ଦି, ଚଢ଼େଇ ହଗା ପର୍ବତ, ନଳବଣ, ଛଟିଆନାସି ପ୍ରଭୃତି ଜାଗାରେ ଗୋଟିଏ ଘେରା ବୁଲି ଆସିଲାଣି । ବାଟରେ ଯାହାକୁ ଦେଖୁଛି ପଚାରିଛି—''ମୋ ସାରସୀକୁ ଦେଖିଛ କି ?''

ନିରନ୍ତର ଅନ୍ନ ଚିନ୍ତାରେ ବ୍ୟାକୁଳ ସମୁଦ୍ର-କାକ, ଘେରିବାଡ଼ ଉପରେ ଡେଣା ମେଲାଇ ସୂର୍ଯ୍ୟ କିରଣ ଉପଭୋଗ କରୁଥିବା ପାଣିକୁଆ, ଚଢ଼େଇହଗାରେ ମୌନ ବ୍ରତ ଧାରଣ କରିଥିବା କାଣ୍ଡିବଗ, ଗଣ୍ଡ ଜଳରେ ଗ୍ରୀବା ଭାଙ୍ଗି ନିଦ୍ରାମଗ୍ନ ହଂସରାଳି— ସମସ୍ତଙ୍କଠାରୁ ନିରାଶା ବାଣୀ ଶୁଣିବାକୁ ମିଳିଲା—''ନାହିଁ, ନାହିଁ—ଦେଖିନାହିଁ ।''

ଏବେ ଦୁଶ୍ଚିନ୍ତାଟା ବଦଳିଲା ଆଶଙ୍କାରେ । ସାରସର ପଛେ ପଛେ ଦଳ ଦଳ ହୋଇ ଉଡ଼ି ଆସୁଥିଲେ କିଛି ପକ୍ଷୀ ସହାନୁଭୂତି ପ୍ରଦର୍ଶନ କରିବା ପାଇଁ । ସାରସର ବିଳାପ ଆହୁରି ଆହୁରି ଶୁଭୁଥିଲା ବିକଳ ହୋଇ । ସେ ବିଳାପ ପ୍ରତିଧ୍ୱନିତ ହେଉଥିଲା ଭାଲେରି ଓ ସୋଲରି ପାହାଡ଼ର ପିଠିରେ ।

ସାରସ ଏବେ ପାନ୍ଥନିବାସ ଆଡ଼େ ଉଡ଼ି ଆସୁଥିଲା ଏକ ହତଭାଗ୍ୟ ସାଧବ ପୁଅର ଦିଗ୍‌ଭ୍ରାନ୍ତ ବୋଇତ ଭଳି, ହଲି ହଲି, ଦୋହଲି ଦୋହଲି ।

ଏବେ ଆଉଟ ହାଉସ୍‌ରୁ ଶୁଭିଲା ସେଇ ନିତ୍ୟ ନୈମିତ୍ତିକ ଶୁକପକ୍ଷୀର ଚିତ୍କାର— ''ଚକ୍ରଧର, ଚକ୍ରଧର, ... ପକ୍ଷୀ ଜାତିକୁ ଉଦ୍ଧାର କର ।''

କ୍ରିଷ୍ଟେନ ଅନୁମାନ କଲେ, କିଛି ଗୋଟାଏ ଅଘଟଣ ଘଟିଛି । ସେ ଲନ୍‌କୁ ବାହାରି ଆସିଲେ । ଲନ୍‌ରେ ସାରସଟି ପଡ଼ିଯାଇ ଥରୁଥିଲା । ତାକୁ ସେ କୋଳକୁ ଉଠାଇ ନେଲେ । ପାଣି ପିଆଇଲେ । ତା'ର ଶରୀରରେ କିଛି କ୍ଷତ ଥାଇପାରେ ବୋଲି ହାତ ବୁଲାଇଲେ ।

ତାଙ୍କର ଆଶଙ୍କା ହେଲା ସାରସୀ ଗଲା କୁଆଡ଼େ ? ସେ ବନବିଭାଗର

କର୍ମଚାରୀଙ୍କୁ ଖବର ଦେଲେ । ନିଜେ ଗୋଟିଏ ଲଞ୍ଚରେ ବସି ବାହାରିଲେ ସାରସୀ ସନ୍ଧାନରେ ।

କ୍ରିଷ୍ଟେନଙ୍କ କୋଳରେ ନିଶ୍ଚଳ ହୋଇ ପଡ଼ିଥିଲା ସାରସ । ସେ ତା'ର ମଥା ସାଉଁଳୁ ଥିଲେ । ପକ୍ଷ ସାଉଁଳୁ ଥିଲେ । ତା'ର ଆରକ୍ତ ଚକ୍ଷୁ ଦୁଇଟି ଏଣେ ତେଣେ ଘୂରି ବୁଲୁଥିଲା ।

ତା'ର କରୁଣ ଚାହାଣିରେ ସେ ଲକ୍ଷ୍ୟ କରୁଥିଲେ ଯୁଗପଦ୍ ଆଶା ଓ ଆଶଙ୍କା । ସେ ବୋଧେ ଭାବୁଥିଲା ଯେ, ତା'ର ପତ୍ନୀ ହୁଏତ କେଉଁଠି ସ୍ଥାନୀୟ ପକ୍ଷୀଙ୍କ ଗହଣରେ ବସି ଗପ କରୁଥିବ । ପୁଣି ଭାବୁଥିଲା, ଗପ କରୁଥିଲେ ମଧ୍ୟାହ୍ନ ସୁଦ୍ଧା ଫେରି ଆସିବାର କଥା ।

ସମୟ ଅତିକ୍ରାନ୍ତ ହେବା ସଙ୍ଗେ ସଙ୍ଗେ ତା' ମନକୁ ପାପ ଛୁଉଁଥିଲା । ଏବେ ସକାଳୁ ନଳବଣ ଛାଡ଼ି ଖାଦ୍ୟ ଅନ୍ୱେଷଣରେ ଯାଇ ସନ୍ଧ୍ୟାକୁ ଫେରି ଆସୁ ନଥିବା ପକ୍ଷୀଙ୍କ ପରି ତା'ର ଦଶା ହେବନି ତ ! ସେ ଏବେ କେଉଁଠି ଫାଶରେ ପଡ଼ି ବିକଳରେ ରଡ଼ି ଛାଡୁନି ତ !

ଏହା ଭାବି ଭାବି ତା' ଚକ୍ଷୁରୁ ଏବେ ଲୁହ ନୁହେଁ, ବହୁଥିଲା ଲହୁର ଝରଣା ।

କାଳିଜାଇ ପାହାଡ଼ରେ ଚାଲିଥିଲା ପିକ୍‌ନିକ୍‌ର ପାର୍ବଣ । ଗୋଟିଏ ପଥର ଚକଡ଼ାରେ ବସିଥିଲେ ଛ' ସାତଜଣ । ଦୁର୍ଦ୍ଧର୍ଷ, ଭୀମକାୟ, ବପୁବନ୍ତ ପୁରୁଷ ସେମାନେ । ସମସ୍ତଙ୍କ ହାତରେ ଥିଲା ମଦିରା ଗ୍ଲାସ । ପାଖରେ ଚୂଲିରେ ଦୁକୁ ଦୁକୁ ନିଆଁ ଜଳୁଥିଲା । ସେ ନିଆଁରେ ପକ୍ଷୀଙ୍କର ମାଂସ ରୋଷ୍ଟ ହେଉଥିଲା । ମାଂସ ରୋଷ୍ଟ କରୁ କରୁ ବାହାସ୍ଫୋଟ ମାରୁଥିଲା ଜଣେ ରକ୍ତବାହୁ–''ଏହି ଦ୍ୱୀପରେ ବୋଧେ ଏ ବଡ଼ ପକ୍ଷୀର ବସା । ଗୋଟିଏ ମାତ୍ର ଗୁଳିରେ ଟଳିପଡ଼ିଲା । ଦେଖିଲ କେମିତି ଅବ୍ୟର୍ଥ ଲକ୍ଷ୍ୟ !''

–''ପ୍ରଥମେ ମୁଁ ତାକୁ ଏ ଦ୍ୱୀପରେ ଠାବ କରିଥିଲି''–ଆଉ ଜଣେ ବାହାଦୁରି ଦେଖାଇଲା ।

–''ଏବେ ସବୁ ପ୍ରକାର ମାଂସ ଚାଖିବା ହୋଇଗଲା ।''

–''ଗତ ଥର ଆମେ ଗେଣ୍ଡୀ ମାଂସ ଖାଇଥିଲେ । ଏହି ବଡ଼ ପକ୍ଷୀଟିର ମାଂସ

ଖାଇବା ଖାଲି ବାକି ଥିଲା ।''

ପକ୍ଷୀର ମାଂସକୁ ଛିଣ୍ଡାଇ ଛିଣ୍ଡାଇ ତା'ର ସାଙ୍ଗଟିର କଥାକୁ ସଂଶୋଧନ କରି ପ୍ରଥମ ବ୍ୟକ୍ତି କହୁଥିଲା—''ସବୁ ମାଂସ ହୋଇଗଲା, କାଉ ଓ ଶାଗୁଣା ଛଡ଼ା ।''

—''ଦେଖ, କେତେ ବଡ଼, କେତେ ଚମତ୍କାର ଗୋଡ଼ !''

—''ଗୋଟେ ମଡ଼େଲର ଗୋଡ଼ ପରି ଲମ୍ବା ।''

—''ପୁଣି ଏକ ଷୋଡ଼ଶୀର ଜଙ୍ଘ ପରି ମୁଲାଏମ ।''

ଏ ଉପମା ସମସ୍ତଙ୍କ ମନକୁ ପାଇଲା । ତେଣୁ ସେମାନେ ପଥରଚକଡ଼ା ଉପରେ ନୃତ୍ୟ କରିବାକୁ ଲାଗିଲେ ।

ଗୋଡ଼ରୁ ମାଂସତକ ଚାଟି ଚାଟି ସଫାକରି, ଫିଙ୍ଗି ଦେଉ ଦେଉ ଜଣେ ଗାଉଥିଲା—''ଯାଆରେ ଉଡ଼ି ଉଡ଼ି ଯା', ଉଡ଼ାଜାହାଜ ଉଡ଼ିଯା' ।''

ଏଉଡିଟିଏ ମାରି ଆଉ ଜଣେ କହୁଥିଲା—''ଏହି କଅଁଳିଆ ମାଂସ ପାଇଁ ତୁମ ପାଖକୁ ବାରମ୍ବାର ଆସିବୁ ଚିଲିକା ସୁନ୍ଦରୀ ।''

—''ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଚାଖୁଥିଲେ ନୂଆ ଲାଗୁଥାଇ''—କୌଣସି କବିଙ୍କ କବିତାକୁ ଅପଭ୍ରଂଶ କରି ପଦଟିଏ ବୋଲିଲା ସେ ।

ପିକ୍‌ନିକ୍ ପର୍ବଟା ବୋଧେ ହୋଇଥାନ୍ତା ଆହୁରି ପ୍ରଲମ୍ବିତ । ଅଟ୍ଟହାସ୍ୟର ତୀବ୍ରତା ବୋଧେ ହୋଇଥାନ୍ତା ଆହୁରି ଉଚ୍ଚାଟ । ପରିବେଶଟା ବୋଧହୁଏ ହୋଇଥାନ୍ତା ଆହୁରି ଉତ୍ତାଳ । ପକ୍ଷୀ-ପିଶାଚମାନେ ହୋଇଥାନ୍ତେ ଆହୁରି ମାତାଲ ।

ପାନୀୟ ଦ୍ଵାରା ତରଳ ହୋଇଥିବା କଣ୍ଠନଳୀରୁ ଆହୁରି ଝରିଥାନ୍ତା କେତେକେତେ କବିତା । କେତେକେତେ ଜୋକ୍‌ସ, ସିନେମା ସଂଗୀତ ।

ତା'ପରେ ସେମାନେ ମୃତ ପକ୍ଷୀର ଆତ୍ମାର ସଦ୍‌ଗତି ପାଇଁ ଆରମ୍ଭ କରିଥାନ୍ତେ ଆଦିମାନବର ନୃତ୍ୟ ।

ସେ ଦିଗରେ ଦୁଇପଟୁ ଦୁଇଟି ଲଞ୍ଚ ବଡ଼ ବଡ଼ ଢେଉ କାଟି ଦ୍ରୁତ ବେଗରେ ମାଡ଼ି ଆସୁଥିଲା । ଦୁର୍ବୃତ୍ତମାନଙ୍କ ଛାତିରେ ଛନକା ପଶିଲା ।

ସେମାନେ ନିଜର ପିକ୍‌ନିକ୍‌ର ସାମଗ୍ରୀ ଛାଡ଼ି ଲଞ୍ଚ ଷ୍ଟାର୍ଟ କରି ପଳାୟନ କଲେ । ବନବିଭାଗର କର୍ମଚାରୀମାନେ ସେମାନଙ୍କର ଅନୁଧାବନ କଲେ ।

କ୍ରିଷ୍ଟେନ ପିକ୍‌ନିକ୍ ସ୍ଥାନର ଚତୁଃପାର୍ଶ୍ୱ ଖୋଜି ବୁଲିଲେ । ତାଙ୍କର ଆଶଙ୍କା

ସତ୍ୟରେ ପରିଣତ ହେଲା । ସେ ସାରସୀର ଲମ୍ବା ଗୋଡ଼ ଦୁଇଟି ଆବିଷ୍କାର କଲେ ଗୋଟିଏ ବୁଦା ମୂଳେ । ପରସବୁ ଇତସ୍ତତଃ ହୋଇ ଉଡୁଥିଲେ ଦ୍ୱିପ୍ରହରର ହାଓ୍ୱାରେ ।

ସାରସକୁ ଆଉ କିଛି ଅବୁଝା ରହିଲା ନାହିଁ । ସବୁ ଶେଷ ହୋଇଯାଇଛି । ସେ କାଳିଜାଈ ମନ୍ଦିର ଆଡ଼େ ଅନାଇଥିଲା ସଜଳ ନୟନରେ । ସତେ ଯେପରି ସେ ଅଳି କରୁଥିଲା–"ହେ ଦେବୀ, ମୋର ପ୍ରାଣାଧିକ ପ୍ରିୟାର ଜୀବନ ଫେରାଇ ଦିଅ । ପ୍ରତି ବଦଳରେ ମୋର ଜୀବନ ନେଇଯାଅ ।"

ସାରସକୁ ଲଞ୍ଚରେ ଧରି ବରକୂଳକୁ ଫେରିଲା ବେଳେ କ୍ରିଷ୍ଟେନଙ୍କ ଆଶଙ୍କା ବଢ଼ିଲା । ସେ ପ୍ରାର୍ଥନା କରୁଥିଲେ–"ହେ ଈଶ୍ୱର ! ଆପଣ ଦୋଷୀକୁ ଦଣ୍ଡ ଦିଅନ୍ତୁ ବା ନ ଦିଅନ୍ତୁ, ଅନ୍ତତଃ ସାରସଟିକୁ ବଞ୍ଚାଇ ରଖନ୍ତୁ ।"

ସାରସଟି ଏବେ ନିରବ ନିଶ୍ଚଳ ହୋଇ ତାଙ୍କ କୋଳରେ ପଡ଼ି ରହିଥିଲା । ତା'ର ଦେହ ଧୀରେ ଧୀରେ ଶୀତଳ ହୋଇ ଆସୁଥିଲା । କାଳିଜାଈ ଛାଡ଼ିବା ପୂର୍ବରୁ ସେ ଏକ ବିକଳ ଚିତ୍କାର ଛାଡ଼ି ଗ୍ରୀବା ଭାଙ୍ଗି ପଡ଼ିଯାଇଥିଲା ।

କାଳିଜାଈ ପାହାଡ଼ ତଳର କାଶତଣ୍ଡୀର ଚଅଁର ସବୁ କ୍ରିଷ୍ଟେନଙ୍କୁ ଏବେ ଦିଶୁଥିଲେ ଶହ ଶହ ବର୍ଚ୍ଛା ପରି । ବରକୂଳକୁ ଫେରିଲା ବେଳେ ଭାଲେରି ଚୂଡ଼ାରେ ଅସ୍ତ ହେବାକୁ ଉଦ୍ୟତ ସୂର୍ଯ୍ୟ ଦିଶୁଥିଲା ଏକ ମାରାତ୍ମକ ବୋମା ପରି ।

ରାତିରେ ସେ ନିଜ ପ୍ରକୋଷ୍ଠର ଦରଓ୍ୱାଜା ବନ୍ଦ କରି ପଦଚାରଣା କରୁଥିଲେ । ତାଙ୍କର ସବୁ ସାଧନା ପଣ୍ଡ ହେଲା । ବ୍ୟର୍ଥ ହୋଇଗଲା ବର୍ଷେ ବର୍ଷର ତପସ୍ୟା । ଯେଉଁ ଆଦର୍ଶ ପଛରେ ଗୋଡ଼ାଇ ଗୋଡ଼ାଇ ସେ ଭାରତବର୍ଷ ଆସି ପହଞ୍ଚିଥିଲେ, ତାହା ଯେମିତି ଫୁରୁଫୁରୁ ହୋଇ ତାଙ୍କ ଚକ୍ଷୁ ସମକ୍ଷରେ ଚାଲିଗଲା ।

ତାଙ୍କ ବ୍ୟକ୍ତିଗତ ଜୀବନରେ ଆସିଥିଲା ଝଡ଼ । ତାକୁ ସହିବା ପାଇଁ ସାହସ ସଞ୍ଚୟ କରୁଥିଲେ । ତାଙ୍କ ଆଦର୍ଶର ରୂପାୟନ ଆରମ୍ଭ ହେଉଥିବା ବେଳେ ସେଠି ସୃଷ୍ଟି ହେଲା ଟାଇଫୁନ୍ । ଚିଲିକାକୁ ଏକ ବିଶ୍ୱ-ସ୍ତରୀୟ ଆଦର୍ଶ ପକ୍ଷୀ ବିହରଣ ସ୍ଥଳ କରିବା ସେ ସ୍ୱପ୍ନ ଦେଖୁଥିଲେ । ଚିଲିକାର ପର୍ଯ୍ୟଟକ : 'ସାରସ' ଶୀର୍ଷକ ତାଙ୍କର ଥିସିସ୍‌ର ପାଣ୍ଡୁଲିପି ପ୍ରାୟ ସରିଆସିଥିଲା । ଏତିକିବେଳେ ତାଙ୍କର ସବୁ ସ୍ୱପ୍ନ ଚୁରମାର ହୋଇଗଲା ।

ସେ ପଦଚାରଣା କରୁକରୁ ବାରମ୍ୱାର ମନେ ମନେ କହୁଥିଲେ–"ହେ ପକ୍ଷୀକୂଳ ! ମୋର ଶତ ଚେଷ୍ଟା ସତ୍ତ୍ୱେ ମୁଁ ତୁମର ସାରସ ସାରସୀଙ୍କୁ ବଞ୍ଚାଇ ପାରିଲିନି । ସେଥିପାଇଁ ମୋତେ କ୍ଷମା କରିଦିଅ ।"

ତା'ପରେ ସେ ଉଠି ଭାୟୋଲିନ୍ ବଜାଇଲେ । ବଡ଼ ମର୍ମାନ୍ତିକ ଥିଲା ତା'ର ସ୍ୱର । ବଡ଼ କରୁଣ ଥିଲା ତା'ର ତନ୍ତ୍ରୀର ଝଂକାର । ବାହାରର ଚରାଚର, ବୃକ୍ଷଲତା ନିରବ, ନିସ୍ତବ୍ଧ ହୋଇ ସେ କରୁଣ ଝଙ୍କାରକୁ ଶୁଣୁଥିଲେ ।

ଭାୟୋଲିନର ଝଙ୍କାର ତାଙ୍କୁ ତୃପ୍ତି ଦେଇ ପାରିଲାନି । କ୍ରୌଞ୍ଚପକ୍ଷୀର ନିଧନରେ କ୍ଷୁବ୍ଧ ବାଲ୍ମୀକି ଅଭିଶାପ ଦେଲା ପରି ସେ ମନେ ମନେ ଅଭିଶାପ ଦେଉଥିଲେ– "ହେ, ଏ ରାଜ୍ୟର ନିଷାଦଗଣ । ତୁମେ ହତଭାଗ୍ୟ । ତୁମ ଜାତି ହତଲକ୍ଷ୍ମୀ । ତୁମର ପୈଶାଚିକ କର୍ମ ଯୋଗୁ ବଙ୍ଗୋପସାଗର ଗର୍ଭରୁ ଦିନେ ମାଡ଼ିଆସିବ ମହାବାତ୍ୟା । ହଜିଯିବ ଏ ନୀଳହ୍ରଦ ତା'ର ସର୍ବଗ୍ରାସୀ ନୀଳିମା ମଧ୍ୟରେ । ପାର୍ଶ୍ୱବର୍ତ୍ତୀ ନଦୀ ସବୁ ପ୍ରବଳା ହେବେ । ପର୍ବତ ପ୍ରମାଣ ମାଟିରେ ନିଶ୍ଚିହ୍ନ ହୋଇଯିବ ଏ ବିଳାସ ଦୀର୍ଘିକା । ଆକାଶରୁ ଉଲ୍‌କା ଖସି ଧ୍ୱଂସ କରିଦେବ ନଳବଣକୁ ଏକ ଦୁର୍ବାର ଦାବାଗ୍ନିରେ ।"

–"ଏ ହତଭାଗ୍ୟ ଜାତିର ଏସବୁ ପାଇବାର ଅଧିକାର ନାହିଁ । ଏହାର କପାଳରେ ଲେଖାନାହିଁ ନୀଳାମ୍ବୁ ଚିଲିକା । ଲେଖାନାହିଁ ଚିଲିକାର ପର୍ଯ୍ୟଟକ ପକ୍ଷୀ ।"

ସାରା ନାହାନ୍ତି । ସାରସ ନାହିଁ । ସାରା ତାଙ୍କୁ ଦେଇଛନ୍ତି ଜୀବନରେ ଚରମ ପରାଜୟ । ସାରସର ନିଧନ ସେ ପରାଜୟ ଉପରେ ଆଉ ଏକ ଲାଞ୍ଛନାର ପ୍ରଲେପ ।

ତାଙ୍କ ମନ ଭିତରକୁ ଏଭଳି ଚିନ୍ତା ଆସୁଥିଲା–ପରାଜିତ ସୈନିକ ପାଇଁ ଗୋଟିଏ ମାତ୍ର ସମ୍ମାନ ଜନକ ପନ୍ଥା । ପିସ୍ତଲରେ ଥରେ ମାତ୍ର ଟ୍ରିଗର ଦବାଇଦେଲେ ସବୁ ଦୁଃଖ ଓ ସବୁ ଦହନର ଅନ୍ତ ହୋଇଯିବ । ସେ ଗୁଳିର ଝଙ୍କାରରେ ହୁଏତ ନିର୍ମମ ମନୁଷ୍ୟ ଜାତିର ହୃଦୟର ତନ୍ତ୍ରୀସବୁ ଥରିଉଠିବ । ସେମାନଙ୍କର ପଶ୍ଚାତ୍ତାପ ଯୋଗୁ ହୁଏତ ବିରଳ ପକ୍ଷୀମାନେ ପାଇବେ ନୂଆ ଜୀବନ ।

ସେ ହୁଇସ୍କିର ବୋତଲ ଖୋଲିଲେ । ସେ ଯେଉଁ ପଦକ୍ଷେପ ନେବାର ପରିକଳ୍ପନା କରୁଥିଲେ, ସେଥିପାଇଁ ଆବଶ୍ୟକ ଯଥେଷ୍ଟ ମନୋବଳ ।

ସେ ପ୍ୟାଡ୍‌ରେ ଲେଖିଲେ : "ଅସହାୟ ପକ୍ଷୀମାନଙ୍କ ପାଇଁ ମନୁଷ୍ୟର ସହାନୁଭୂତି ଜାଗରୁକ କରିବା ପାଇଁ ମୁଁ ଏ ପଦକ୍ଷେପ ନେଉଛି ।"

ମାତ୍ରାଧିକ ଡ୍ରିଂକ୍‌ସରେ ଅନଭ୍ୟସ୍ତ କ୍ରିଷ୍ଟେନଙ୍କୁ ଅବିଳମ୍ବେ ନିଦ ଆସିଯାଉଥିଲା ।

ପାହାନ୍ତିଆ ପ୍ରହରରେ ଦେବଦାରୁ ଶାଖା ଭିତରୁ କୁମ୍ଭାଟୁଆ ସୁମଧୁର କଣ୍ଠରେ ପ୍ରତିଦିନ ଭଳି ରାବ କଲା–''ଉଠରେ ଉଠରେ... ।'' ସତେ ଯେପରି ଉପନିଷଦର ''ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟ ବରାନ୍ ନିବୋଧତ''–ଏହି ସୂକ୍ତକୁ ଦୋହରାଉଥିଲା ସେ ।

ସେହି ମଙ୍ଗଳମୟ ପ୍ରଭାତ ତାଙ୍କୁ ଏକ ମହାନ ଶିକ୍ଷା ଦେଲା । ଅନ୍ୟର ଅବିମୃଶ୍ୟକାରିତା ଯୋଗୁଁ ନିଜେ କୃଶବିଦ୍ଧ ହୁଅ ନାହିଁ । ଦୁର୍ଦ୍ଦିନ ସହିତ ଦୃଢ଼ତାର ସହ ଲଢ଼ ।

ସାରା ନ ଥାନ୍ତୁ ।

ଲାରା ଅଛି ।

ଚିଲିକା ନ ଥାଉ ।

ଅଛି ବୈକାଲ । ଅଛି ମାନସରୋବର ।

ସାରସ ନ ଥାଉ ।

ଅଛନ୍ତି ଭରତିଆ, ଭଦଭଦଳିଆ, ହଂସ, ହଂସରାଳି, କେତେକେତେ ଜାତି ପ୍ରଜାତିର ବିଲୁପ୍ତ ପ୍ରାୟ ପକ୍ଷୀ । ତମେ ତାଙ୍କର ଉଦ୍ଧାର କର ।

ମୃତ୍ୟୁ ମହାନ ।

କିନ୍ତୁ ମୃତ୍ୟୁ ଠାରୁ ଜୀବନ ମହତ୍ତର ।

ତୁମେ ଅମୃତର ସନ୍ତାନ । ଜୀବନ ତୁମ ପାଇଁ ଏକ ବରଦାନ । ତେଣୁ ତୁମେ ଈଶ୍ୱରଙ୍କ ଇଚ୍ଛା ପୂରଣ କର ।

ସାରସର ମୂଳମନ୍ତ୍ରକୁ ସ୍ମରଣ କର । ଯାତ୍ରା କର । ନିରନ୍ତର । ଯାତ୍ରା ବିନା ଗତ୍ୟନ୍ତର ନାହିଁ ।

ଆଉ ତାଙ୍କ ମନରେ ସଂଶୟ ନ ଥିଲା ।

ପ୍ୟାଡକୁ ସେ ଖଣ୍ଡ ଖଣ୍ଡ କରି ଉଡ଼ାଇ ଦେଲେ ଝର୍କା ସେପାଖେ । କାଗଜ ଟୁକୁରା ସବୁ ନିଃଶବ୍ଦରେ ଗେଣ୍ଡାଳିଆ ପରପରି ଉଡ଼ିଯାଉଥିଲେ ତଳି ତଳି ।

କାନାଡ଼ା ଫେରିବା ପାଇଁ କ୍ରିଷ୍ଟେନ ସବୁ ପ୍ରସ୍ତୁତି କରି ସାରିଥିଲେ । ପାନ୍ଥନିବାସରୁ ଚେକ୍‌ଆଉଟ୍ କଲା ପୂର୍ବରୁ ସେ ଲନ୍‌କୁ ଆସି ପୁଣି ଥରେ ଚିଲିକାକୁ ଫେରି ଚାହିଁଲେ । ତା' ଉପରେ ଛାମୁଡ଼ିଆ ପରି ହାମୁଡ଼ି ହୋଇ ପଡ଼ିଥିଲା ପାଉଁଶିଆ ଆକାଶ ।

ଏବେ ଚିଲିକା ଦିଶୁନଥିଲା ଚିଲିକା ପରି । ଦିଶୁଥିଲା ମାଇଲ ମାଇଲ ଲମ୍ବି ଥିବା ଏକ ମରୁଭୂମି ପରି । ଶେଷ ଶରତର ଆକାଶ ଦିଶୁଥିଲା ରଙ୍ଗହୀନ, ବର୍ଣ୍ଣହୀନ ଓ ବୈଚିତ୍ର୍ୟହୀନ ।

ସେ ମନେ ମନେ ଭାବୁଥିଲେ ଏଣିକି ଆକାଶରେ ଭାସୁଥିବେ ମାଳମାଳ ମେଘ । ନଈ ପଠାରେ ଦିଶୁଥିବ କାଶତୃଣର ଧବଳ ସମୁଦ୍ର । ସାରସୀ ଓ ପାଟ ମାନଙ୍କରେ ଫୁଟୁଥିବେ ପଦ୍ମ ଓ କୁମୁଦ ।

କିନ୍ତୁ ଆଉ ଆସିବନି ଶରତ । ଆଉ ହସିବନି ନୀଳାମ୍ବୁ ଚିଲିକା । ଆଉ ତା'ର ଆକାଶରେ ଉଡ଼ିବେନି ବକାଳିକା ମାଳିକା ।



## କୃତଜ୍ଞତା

'ଶେଷ ଶରତ'କୁ ଲୋକଲୋଚନକୁ ଆଣିବା କାର୍ଯ୍ୟରେ ଯେଉଁମାନେ ଅକୁଣ୍ଠ ସହଯୋଗ ଓ ଉତ୍ସାହ ଦେଇଛନ୍ତି ସେମାନଙ୍କୁ ମୁଁ ଆନ୍ତରିକ କୃତଜ୍ଞତା ଜଣାଉଛି । ସେମାନେ ହେଲେ :

- ପ୍ରତିବେଶୀ ପତ୍ରିକା : ଯେ କି ମୋର ଦୀର୍ଘ ଗଳ୍ପଟିକୁ ପ୍ରଥମେ ଲୋକଲୋଚନକୁ ଆଣିଥିଲା ୧୯୯୯ରେ ।

- ଶ୍ରୀ ଆର୍ଯ୍ୟ ଯଜ୍ଞଦତ୍ତ : ଏହି ଗାଳ୍ପିକ ବନ୍ଧୁଙ୍କ ପ୍ରେରଣା ଯୋଗୁଁ ଗଳ୍ପଟିର ଉପନ୍ୟାସରେ ରୂପାନ୍ତରଣ ଘଟିଛି ।

- ଶ୍ରୀ ସମର ଝା : ରେଳବାଇର ଜଣେ ଉଚ୍ଚ ପଦାଧିକାରୀ ଓ ପକ୍ଷୀ ପର୍ଯ୍ୟବେକ୍ଷକ - ସାରସ ପକ୍ଷୀ ସମ୍ପର୍କରେ ଅନେକ ସୂଚନା ତାଙ୍କଠାରୁ ମିଳିଛି ।

- ଶ୍ରୀ ତପନ ପଟ୍ଟନାୟକ ଓ ଭଗବାନ ଜୟସିଂହ : ଯେ କି ଚିଲିକା ଓ ଚିଲିକା କୂଳବର୍ତ୍ତୀ ବିଭିନ୍ନ ସ୍ଥାନରେ ଭ୍ରମଣ ସମୟରେ ମୋତେ ସାହଚର୍ଯ୍ୟ ଦେଇଛନ୍ତି ।

- ଶ୍ରୀ କୁଳମଣି ଜେନା ଓ ରବୀନ୍ଦ୍ର କୁମାର ନାୟକ : ଚିଲିକାର ସାମ୍ପ୍ରତିକ ସ୍ଥିତି ସମ୍ପର୍କରେ ଅନେକ ତଥ୍ୟ ଯୋଗାଇଛନ୍ତି ।

- ଓଡ଼ିଶା ପର୍ଯ୍ୟଟନ ବିକାଶ ନିଗମର ମ୍ୟାନେଜିଂ ଡାଇରେକ୍ଟର ଶ୍ରୀ ସନ୍ତୋଷ ଷଡ଼ଙ୍ଗୀ ଓ ମୋର ଛାତ୍ର ସୁଧାଂଶୁ ସାମନ୍ତରାୟ : ବରକୂଳରେ ଆତିଥ୍ୟ ପ୍ରଦାନ କରି ଏ ଉପନ୍ୟାସର ରୂପାୟନରେ ସାହାଯ୍ୟ କରିଛନ୍ତି ।

- ସର୍ବଶ୍ରୀ ଦୀପକ ମିଶ୍ର, ନବକିଶୋର ରାଜ, ବିଭୂତି ପଟ୍ଟନାୟକ, ଶ୍ରୀମତୀ ରଶ୍ମୀ ରାଉଳ : ମୋର ଉପନ୍ୟାସର ପ୍ରାରୂପ ପାଠକରି ତାଙ୍କର ମୂଲ୍ୟବାନ ମତାମତ ଦେବା ସଙ୍ଗେ ସଙ୍ଗେ ଯଥେଷ୍ଟ ଉତ୍ସାହ ଦେଇଛନ୍ତି ।

- ବନ ବିଭାଗ, ଓଡ଼ିଶା - ଚିଲିକା ବଣ୍ୟ ପ୍ରାଣୀ ଡିଭିଜନ୍ : ତାଙ୍କ ଦ୍ୱାରା ପ୍ରଣୀତ 'ମରାଳମାଳିନୀ ନୀଳାମ୍ବୁ ଚିଲିକା' ପୁସ୍ତିକାରୁ କିଛି ତଥ୍ୟ ଆହରଣ କରିଛି ।

- ଶ୍ରୀ ଶରତ ଚନ୍ଦ୍ର ଦାସ : ବଡ଼ ଧୈର୍ଯ୍ୟର ସହ ଏ ପୁସ୍ତକର ଅକ୍ଷର ବିନ୍ୟାସ କରିଛନ୍ତି ଏବଂ ବହୁ ପରିଶ୍ରମ କରି ପାଣ୍ଡୁଲିପିର ସଂଶୋଧନ କରିଛନ୍ତି ।

- ସର୍ବଶେଷରେ ମୋର ପତ୍ନୀ ସୀମା : ଯାବତୀୟ ଗୃହ ଝଞ୍ଜାଳରୁ ମୁକ୍ତି ଦେଇ ଏ ଉପନ୍ୟାସଟି ସମ୍ପୂର୍ଣ୍ଣ କରିବାରେ ସହାୟିକା ହୋଇଛନ୍ତି ।

